# ସାହିତ୍ୟ ପତ୍ର

( ଅଧ୍ୟାପକ ଜୟକୃଷ୍ଣ ମିଶ୍ର ସ୍ମରଣିକା )

●



●

ଓଡ଼ିଆ ବିଭାଗ

ରେଭେନ୍‌ସା କଲେଜ,

କଟକ-୩

# ସାହିତ୍ୟ ପତ୍ର

( ଅଧ୍ୟାପକ ଜମ୍ବୁକୃଷ୍ଣ ମିଶ୍ର ସ୍ମରଣିକା )





ଓଡ଼ିଆ ବିଭାଗ

ରେଭେନ୍‌ସା କଲେଜ,

କଟକ-୩

## କୋରକରୁ କବର

ଜନ୍ମ—୧୯୧୪, ଗୋପିନାଥ ପୁର ଶାସନ, ତିଗିରିଆ, କଟକ ।
ପିତା—ସ୍ୱର୍ଗତ ପଣ୍ଡିତ ବଳଭଦ୍ର ମିଶ୍ର ।
ମୃତ୍ୟୁ—୧୯୭୯, ଡିସେମ୍ବର ୧୦ ତାରିଖ ।
ଶିକ୍ଷା—୧୯୩୩ ବାଙ୍କି ଡମପଡ଼ା ହାଇସ୍କୁଲରୁ ସ୍କୁଲଶିକ୍ଷା ସମାପ୍ତି ।
୧୯୩୭ ଇଂରାଜୀ ଅନର୍ସ ସହ ବି. ଏ. ପାଶ୍ ।
୧୯୪୪ କଲିକତା ବିଶ୍ୱ ବିଦ୍ୟାଳୟରୁ ଏମ୍. ଏ. ପାଶ୍ ।

କର୍ମମୟ ଜୀବନ :
ଶିକ୍ଷକ—୧୯୩୭ରୁ ୧୯୪୪ମସିହା ଆଠଗଡ଼ ହାଇସ୍କୁଲରେ ଶିକ୍ଷକତା ।
ଅଧ୍ୟାପକ—୧୯୪୪ ରେ ଏମ୍. ଏ. ପାଶ୍ ପରେ ୧୯୪୪ ରୁ ୧୯୪୭ ପର୍ଯ୍ୟନ୍ତ ୨ବର୍ଷ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜର ଅଧ୍ୟାପକ ।
୧୯୪୭ ରୁ ୧୯୫୮—ରେଭେନ୍ସା ମହାବିଦ୍ୟାଳୟର ଅଧ୍ୟାପକ
୧୯୫୮ ରୁ ୧୯୬୪—ବିଭିନ୍ନ କଲେଜ ସାଂସ୍କୃତିକ ସଂସ୍ଥା ଏପରିକି ଗୋଟିଏ ବର୍ଷପାଇଁ ରାଜ୍ୟ ସାଂସ୍କୃତିକ ବିଭାଗର ଡେପୁଟି ଡାଇରେକ୍ଟର ପଦରେ ଅବସ୍ଥାନ ।
୧୯୬୪ ରୁ ୧୯୬୮—ବଲାଙ୍ଗିର, କଳାହାଣ୍ଡି ଓ କୋରାପୁଟ ଶିକ୍ଷା ମଣ୍ଡଳର ସ୍କୁଲ ସମୂହର ଇନସ୍ପେକ୍ଟର ।
ଅବସର ଗ୍ରହଣ—ଦୀର୍ଘ ୩୦ ବର୍ଷ ଶିକ୍ଷକ ତଥା ଅଧ୍ୟାପନାରେ ଆତ୍ମୋତ୍ସର୍ଗ କରି ୧୯୬୮ ରେ ଶିକ୍ଷାବିଭାଗର ସରକାରୀ କର୍ମରୁ ଅବସର ।
ଅଧ୍ୟକ୍ଷ କାର୍ଯ୍ୟ—୧୯୬୮ରୁ ୧୯୭୪ ଦୀର୍ଘ ୬ବର୍ଷ କାଳ ବଡମ୍ବା କଲେଜର ଅଧ୍ୟକ୍ଷ ।
୧୯୭୭ ରୁ ୧୯୭୯ ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟ ଆୟୋଗର ପରିଦର୍ଶୀ ଅଧ୍ୟାପକ ଭାବେ ରେଭେନ୍ସା କଲେଜରେ ଅବସ୍ଥାପିତ ।

ସାରସ୍ୱତ ଅବଦାନ:
କାବ୍ୟକବିତା—(ସଂସ୍କୃତ)—ମହାକାବ୍ୟ 'ମାତୃମୂକ୍ତି ମୁକ୍ତାବଳୀ'—ମୁଖବନ୍ଧକାର 'ସର୍ବପଲ୍ଲୀ ରାଧାକୃଷ୍ଣନ ।—(ଓଡ଼ିଆ)—'ମଞ୍ଜୁଳା ମଣି ମାଳିକା' ୮ଟି ଖଣ୍ଡକାବ୍ୟ ସଂକଳନ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ସମୀକ୍ଷା । ଏବଂ ବହୁ ଗବେଷଣାତ୍ମକ ପ୍ରବନ୍ଧ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ।

( ସଂ: ଜୟକୃଷ୍ଣ ମାଝୀ, ୫ମ ବର୍ଷ ଓଡ଼ିଆ )

## ମୁଁ ତାଙ୍କୁ ଯେପରି ଜାଣେ

ଡଃ ମହେନ୍ଦ୍ର କୁମାର ରାଉତ

ସ୍ୱର୍ଗତ ଜୟକୃଷ୍ଣ ମିଶ୍ରଙ୍କୁ ମୁଁ ୧୯୬୪ରୁ ଜାଣିଛି । ସେ ସେତେବେଳେ ରେଭେନ୍ସା କଲେଜରେ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ । କିଛିଦିନ ପରେ ପୁଣି ଚାଲିଗଲେ । ତା'ପରେ ସେ ପୁଣି ଦୀର୍ଘ ବହୁବର୍ଷ ଏହି କଲେଜରେ ଅଧ୍ୟାପନା କରିଛନ୍ତି । ସ୍ୱର୍ଗତ ମିଶ୍ରଙ୍କ ମେଳାପୀ ଗୁଣକୁ ମନେରଖିବା କଥା । ସେ କ୍ଷଣକ ମଧ୍ୟରେ ଜଣଙ୍କୁ ଆପଣାର କରି ପାରୁଥିଲେ । ବହୁଦିନ ପୂର୍ବର କଥା—ସେଦିନ ଅଧ୍ୟକ୍ଷ ସ୍ୱର୍ଗତ ଗୋଲୋକବିହାରୀ ଦାନାର୍ଜୀ ସ୍ୱର୍ଗତ ମିଶ୍ରଙ୍କର ଏକ ତ୍ରୁଟି ଯୋଗୁ ତାଙ୍କ ଉପରେ ଖୁବ୍ ରାଗି ଯାଇଥାନ୍ତି; ମାତ୍ର ବିସ୍ମୟର କଥା, ମୁହୂର୍ତ୍ତକ ମଧ୍ୟରେ ସ୍ୱର୍ଗତ ମିଶ୍ରଙ୍କର ସ୍ୱଭାବସୁଲଭ ଆଳାପ ଯୋଗୁଁ ଅଧ୍ୟକ୍ଷଙ୍କ ରାଗ କୁଆଡେ ଉଭେଇଗଲା; ହସଖୁସିରେ ଉଭୟେ ମଜ୍ଜିଗଲେ । ତାଙ୍କର ଏହି ଗୁଣଯୋଗୁ ସେ ଛାତ୍ରମାନଙ୍କୁ ମଧ୍ୟ ଆପଣାର କରିପାରିଥିଲେ ଓ ଦୀର୍ଘ ୧୧ବର୍ଷ ସ୍ନାତକୋତ୍ତର ଛାତ୍ରାବାସର ତତ୍ତ୍ୱାବଧାରକ ଭାବେ କାର୍ଯ୍ୟ ସମ୍ପାଦନ କରିପାରିଥିଲେ ।

ଓଡ଼ିଆ ଓ ସଂସ୍କୃତରେ ସେ ଅନର୍ଗଳ ଭାବରେ ଭାଷଣ ଦେଇ ପାରୁଥିଲେ । ତାଙ୍କପରି ବିଦଗ୍ଧ ଭାଷଣ ପ୍ରିୟ ବ୍ୟକ୍ତି କ୍ୱଚିତ ଦେଖିବାକୁ ମିଳନ୍ତି । ଆପଣାର ବ୍ୟକ୍ତିଗତ ଅଭାବ ଅସୁବିଧାକୁ ଭୁଲି ହସିବା ଥିଲା ତାଙ୍କର ଧର୍ମ । ଜଣେ ଆଦର୍ଶ ଶିକ୍ଷକ ଭାବେ ସେ ଆମର ସ୍ମରଣୀୟ ହୋଇ ରହିବେ । କର୍ତ୍ତବ୍ୟରତ ରହି ସେ ଆପଣାର ବୈଷୟିକ ଉନ୍ନତି ପ୍ରତି ଦୃଷ୍ଟି ଦେଇପାରି ନାହାନ୍ତି । ଏହି ଦୃଷ୍ଟିରୁ ତାଙ୍କର ଦୁଃସ୍ଥ ପରିବାର ପ୍ରତି ମଧ୍ୟ ଆମର କିଛି କରିବାର କଥା । ତାଙ୍କର ବହୁ ଉପାଦେୟ ରଚନା ମଧ୍ୟ ଅପ୍ରକାଶିତ ରହିଛି—ସେଗୁଡ଼ିକ ମୁଦ୍ରିତ ହେବା ଆବଶ୍ୟକ । କେବଳ ଆନୁଷ୍ଠାନିକ ଭାବେ ଶୋକ ପ୍ରସ୍ତାବ କରିଦେବା ଆମ ପକ୍ଷେ ଯଥେଷ୍ଟ ହେବନାହିଁ । ଏଣୁ ତାଙ୍କର ଯଥାର୍ଥ ସ୍ମୃତିରକ୍ଷାର ଉଦ୍ୟମ ହେଉ ।

# ବିନମ୍ର ଶ୍ରଦ୍ଧାଞ୍ଜଳି

ଡ଼ଃ ଜାନକୀବଲ୍ଲଭ ମହାନ୍ତି



ସ୍ୱର୍ଗତ ଜନ୍ମକୃଷ୍ଣଙ୍କର ଛାତ୍ର ଓ ବହୁବର୍ଷ ତାଙ୍କର ସହକର୍ମୀ ଭାବରେ ରେଭେନ୍ସା କଲେଜରେ କାମ କରିବାର ସୌଭାଗ୍ୟ ମୁଁ ଲାଭକରିଥିଲି । ଅନେକ ବିଷୟ ମୁଁ ତାଙ୍କଠାରୁ ଶିକ୍ଷା କରିଛି । ତାଙ୍କର ବାଗ୍ମିତା, ଅସାଧାରଣ ସ୍ମୃତିଶକ୍ତି ଛାତ୍ରମାନଙ୍କୁ ସବୁବେଳେ ବିସ୍ମୟାଭିଭୂତ କରିଛି । କରିବା ସ୍ୱାଭାବିକ । ଓଡ଼ିଆ ଓ ସଂସ୍କୃତ ଉଭୟ ଭାଷାର କାବ୍ୟକବିତାର ଅଜସ୍ର ପଦ ଥିଲା ତାଙ୍କର କଣ୍ଠସ୍ଥ । ପ୍ରାଚୀନ ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ସେ ସେଗୁଡ଼ିକୁ ସୁସ୍ୱରରେ ଗାଇ ସମସ୍ତଙ୍କୁ ମୁଗ୍ଧ କରି ପାରୁଥିଲେ । ମାତ୍ର ଏହାଠାରୁ ତାଙ୍କର ବ୍ୟକ୍ତିତ୍ୱ ଥିଲା ଆହୁରି ଉଚ୍ଚତର । ସେଥିପାଇଁ ସେ ଅନେକଙ୍କ ମଧ୍ୟରେ ବାରିହୋଇ ପଡୁଥିଲେ । ପାଣ୍ଡିତ୍ୟ ସହ ସାରଲ୍ୟ, ନିରହଙ୍କାର ଓ ଏକ ଆତ୍ମଭୋଳା ଭାବତନ୍ମୟତା ତାଙ୍କର ବ୍ୟକ୍ତିତ୍ୱକୁ କରିଥିଲା ଆକର୍ଷଣୀୟ । ସହଜ ଆନନ୍ଦ ବିତରଣ ଯେପରି ଥିଲା ତାଙ୍କର ସ୍ୱଧର୍ମ । ତାଙ୍କୁ ସବୁବେଳେ ସରସ, ହାସ୍ୟୋଦ୍ଦୀପ୍ତ ଓ ଆବେଗ-ପ୍ରବଣ ରୂପରେହିଁ ଦେଖିବାକୁ ମିଳୁଥିଲା - କଲେଜର କ୍ଲାସରୁମ, ସଭାସମିତିଠାରୁ ଆରମ୍ଭକରି ଘରେ ବାହାରେ ସବୁଠି । ଜୀବନର ନାନା ଅଭାବ, ଅସୁବିଧା, ବଞ୍ଚନା, ପ୍ରବଞ୍ଚନା ପ୍ରତି ସେ ଥିଲେ ସମ୍ପୂର୍ଣ୍ଣ ଉଦାସୀନ । ପଦପଦବୀର ମୋହ, ଅର୍ଥ ଲାଳସା, କ୍ଷମତା-ଲିପ୍ସା ତାହାଙ୍କ ଆନନ୍ଦ-ସନ୍ଧାନୀ ଦୃଷ୍ଟିକୁ ଆଚ୍ଛନ୍ନ କରିଦେଇ ନଥିଲା । ସଖ୍ୟ ଓ ମମତାରେ ସେ ସମସ୍ତଙ୍କୁ ଆପଣାର କରିନେଇ ପାରୁଥିଲେ । ଦଳାଦଳି ମାରପେଞ୍ଚ ବାଦ-ବିବାଦ ତାଙ୍କର ଚିତ୍ତସୀମାକୁ ବି ସ୍ପର୍ଶ କରିପାରି ନଥିଲା । ତାଙ୍କର ଛାତ୍ର ବତ୍ସଳତା ଓ ଶିକ୍ଷା ଦେବାଲାଗି ଆଗ୍ରହ ମଧ୍ୟ ଅତୁଳନୀୟ । ଅଳ୍ପ କେତେବର୍ଷ ପୂର୍ବେ ସେ ହୃଦରୋଗରେ ଆକ୍ରାନ୍ତ ହୋଇଥିଲେ । ଆରୋଗ୍ୟ ଲାଭକରି ଚିକିତ୍ସାଧୀନ ଥିବା ସମୟରେ ସେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ପକ୍ଷରୁ ଅଧ୍ୟାପନା ଲାଗି ରେଭେନ୍ସା କଲେଜରେ ପୁନର୍ନିଯୁକ୍ତି ପାଇଥିଲେ । ପଞ୍ଚଷଠୀ ବର୍ଷ ବୟସ; ଶରୀର ଦୁର୍ବଳ । ଚିକିତ୍ସାଧୀନ ଅବସ୍ଥାରେ ଅଳ୍ପ ଛାତ୍ର ବିଶିଷ୍ଟ କ୍ଲାସ ନେବାକୁ ଅଥବା ବିଶ୍ରାମ ନେବାକୁ ଯେ କେହି କହିବା ସ୍ୱାଭାବିକ । ମାତ୍ର ଏପରି ପ୍ରସ୍ତାବରେ ସେ

ସମ୍ମତ ହେଉ ନଥିଲେ । ତାଙ୍କର ଇଚ୍ଛା ଅଧିକ ଗ୍ରନ୍ଥ ବିଶିଷ୍ଟ ଆକାରରେହିଁ ସେ ପଢ଼ାଇବେ । ଏଭଳି ଅବସ୍ଥାରେ ଦୀର୍ଘ ସମୟ ଭାଷଣ ଦେବାକୁ ମଧ୍ୟ ତାଙ୍କର ଥିଲା ଅପରସୀମ ଆଗ୍ରହ ।

ଚନ୍ଦ୍ରକଳା ଏବଂ ଅଶ୍ରୁ କବିତା ରଚନାରେ ମଧ୍ୟ ତାଙ୍କର ପ୍ରବୀଣତା ଥିଲା । ଲେଖକ ଲେଖିକା ଓ ସାହିତ୍ୟସେବୀମାନଙ୍କୁ ସେ କିପରି ଉତ୍ସାହିତ କରୁଥିଲେ ତାହା ତାଙ୍କର ଗୀତାକାରରେ ଲିଖିତ ନିମ୍ନୋକ୍ତ ପତ୍ରଟିରୁ ଅନୁମେୟ । ଏହି ଗୀତଟି କବି ତେଇଶ ବର୍ଷପୂର୍ବେ ପୁରୀରେ ରହୁଥିବା ନାରୀ କବି ମନମୋହିନୀ ଦେବୀଙ୍କ ନିକଟକୁ ଲେଖିଥିଲେ—ଗୀତଟି ତାହାଙ୍କ ସୌଜନ୍ୟରୁହିଁ ପ୍ରାପ୍ତ ।

"ଆସିଲେ ପତ୍ରିତେ ଭାସିଲେ ସବୁ ତୁମର କଥା
ଦେଖିବ ଆଗେ ମୁଁ ଲେଖିବି ଦେଇ କାବ୍ୟବାରତା ।
ବହୁତ କଷଣ ସହୁ ତ ଅଛୁ ଜଞ୍ଜାଳ ଜାଲେ
କହୁଛ ସେକଥା ରହୁଛ ନାହିଁ ଧୈର୍ଯ୍ୟ ମୋ ଢ଼ାଲେ ।
ପଡ଼ିଲା ରୋଗରେ ସଡ଼ିଲା କ୍ଷୁଦ୍ର ଶିଶୁ ମୋହର
ଦେଢ଼ମାସ ହେଲା ବେଢ଼ଇ ମୋତେ ଦୁଃଖ ପ୍ରବଳ ।
ମାସର ଶେଷକୁ ବରଷ ପୂରି ଯିବ ପୁଣକ
ବେଳ ଯେ ନ ମିଳେ ଖେଳ ଯେ କର୍ମେ ଘାରେ ମଥକ ।
ମାନସେ ବିହର ମାନସେ କଳହଂସୀର ପଥ
ଖବର ତୁମର ନବର ରଚେ ସରଗ ପଥ । –
× × ×
ରହିଲି, ଏତିକି କହିଲି କାମେ ଏଣେ ଅଧୀର
କ୍ଷମିବ ବିଳମ୍ବ, ଗମିବ କାବ୍ୟ ପଥେ ସୁଧୀର ।
ଯଶକୁ ଆଣ ହେ ବଶକୁ, ଏଥି ମୁହିଁ ସନ୍ତୁଷ୍ଟ
କଲ୍ୟାଣୀୟେ, ତୁମେ କଲ୍ୟାଣୀ, କହେ ଶ୍ରୀ ଜୟକୃଷ୍ଣ ।"

ଏହିପରି ବହୁ ସଦ୍‌ଗୁଣର ଅଧିକାରୀ ସ୍ୱର୍ଗତ ଜୟକୃଷ୍ଣ ଥିଲେ ଯଥାର୍ଥତଃ ସାହିତ୍ୟ ସଙ୍ଗୀତ ଓ କଳାସୁବିଜ୍ଞ । ତାଙ୍କୁ ହରାଇବା ଫଳରେ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଅପୂରଣୀୟ କ୍ଷତି ଘଟିଛି ।

●

## ଏ ଭ୍ରମର ଗୁଣ
## ଅବା ଦୋଷରୁ ବିଶେଷ ?

ଡକ୍ଟର କୁଞ୍ଜବିହାରୀ ଦାଶ

●

ଅତିବେଶୀ ଭଲ ହେଲେ ସଂସାର ନ ଚଳେ
ପାତ୍ରାପାତ୍ର ଜ୍ଞାନ ଆଉ ମାତ୍ରାଜ୍ଞାନ ଟଳେ ।
କାଳାକାଳ ବର୍ତ୍ତମାନ ଭେଦ ଯାଏ ଭୁଲି
ଅତିବେଶୀ ଭଲତାରେ କେ ପାରେ ସମ୍ଭାଳି ?
ଟିକିଏ କଥାରେ ତୁମେ ମାଠିଆଏ ହସ
କାନ୍ଦୁଥିବ ସେଇମିତି ନିର୍ଜନେ ଅବଶ୍ୟ !
କେତେ ସ୍ନେହ କେତେ ପ୍ରୀତି ଢାଳିବାକୁ ହୁଏ
ତୁମେ କି ଭାବେ ଯେ ବେଶୀ ଭଲତାର ସୁଏ ?
କିଏ ବା ବିଶ୍ୱାସୀ କିଏ ଅବିଶ୍ୱାସୀ ନର
କେଉଁଠି ବାହାର ତୁମ କେଉଁଠି ବା ଘର
କେତେ ବା କହିବ କାହିଁ ରହିବ ନୀରବ
ବେଶୀ ଭଲର ନ ଥାଏ ସେ ବିଚାର ଲବ ।
କେତେ ବା ହିସାବୀ ହେବ କେତେ ବେହିସାବୀ
ହେବ ବା ବିନୀତ କେତେ ନ ପାରେ ତପ ଭାବି ।
ଉଚ୍ଚକର୍ତ୍ତା ଆଗେ କେତେ ଆଣ୍ଠୁ ମାଡ଼ି ବସି
କେତେ ଅବସ୍ଥାରେ କେତେ ପ୍ରକାରେ ବା ହସି
କେତେ ସରକାରୀ ଦାସ୍ତ ସଂସାରର ଦାସ୍ତ
କେତେ ବ୍ୟସ୍ତହେବା କଥା କେତେ ତୁମ ଅସ୍ତ
କେତେ ତୁମ ଦେଣା ପୁଣି କେତେ ବା ପାଉଣା
ଲାଗେ କେତେ ଉଦାରତା, ଈର୍ଷା ଅବା ଘୃଣା
ଭାରି ଭଦ୍ର ହୋଇ ଜଣେ ଚଳିବାକୁ ହେଲେ
ସଂସାରକୁ ଦେଖୁଥିଲ ବଙ୍କ ଗେଲେ ଗେଲେ ।
ଅତିବେଶୀ ଭଲ ହୋଇ ହୋଇଗଲ ଶେଷ
ଏ ଭ୍ରମର ଗୁଣ ଅବା ଦୋଷରୁ ବିଶେଷ ?

●

# ଅଧ୍ୟାପକ ଜୟକୃଷ୍ଣ ଏକ ସ୍ମୃତି

ସୁରେନ୍ଦ୍ର ମହାନ୍ତି



ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କର ମୃତ୍ୟୁ ସମ୍ବାଦ ପଢ଼ିବାବେଳେ ମୋର ମନେହେଲା, ପୃଥିବୀରୁ ଆଉ ଗୋଟିଏ ହସିଲା ମୁହଁ, ହୃଦୟଭରା ଶ୍ରଦ୍ଧା ଲିଭିଗଲା— ଯାହା ଆଜିର ମୁଖାପିନ୍ଧା ପୃଥିବୀରେ ଅତି ବିରଳ । ବସ୍ତୁତଃ ୬ ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କର ଏହି ଦୁଇଟି ଚରିତ୍ର ମୋ ମନରେ ଗଭୀର ରେଖାପାତ କରିଥିଲା ।

ସେ ଥିଲେ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଗଭୀର ରସଗ୍ରାହୀ । ରସିକ ଏକ ପାରିଭାଷିକ ଶବ୍ଦ । ଚଳନ୍ତି ଅର୍ଥରେ ରସିକ କହିଲେ ଯାହା ବୁଝାଏ, ଅଳଙ୍କାର ଶାସ୍ତ୍ରରେ ରସିକର ଅର୍ଥ ତାହା ନୁହେଁ । ରସିକର ଚେତନାରେ ହିଁ ପ୍ରତ୍ୟେକ ସାହିତ୍ୟ ବା କଳାକୃତି ରସୋତ୍ତୀର୍ଣ୍ଣ ହୋଇଥାଏ । କବି ଅପେକ୍ଷା ସେଥିପାଇଁ ରସିକର ସ୍ଥାନ ଉର୍ଦ୍ଧ୍ୱରେ । ଅଧ୍ୟାପକ ଜୟକୃଷ୍ଣ ମିଶ୍ର ଥିଲେ ସେହିପରି ଜଣେ ରସିକ । ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର କୌଣସି ପ୍ରସିଦ୍ଧ କବିଙ୍କ ସମ୍ପର୍କରେ ଯିଏ ତାଙ୍କର ଭାଷଣ ଶୁଣିଛି, ସେ କେବଳ ମୁଗ୍ଧ ନୁହେ ଅଭିଭୂତ ନହୋଇ ରହିନାହିଁ । ଉପେନ୍ଦ୍ର ଭଞ୍ଜଙ୍କ ସମ୍ପର୍କରେ ତାଙ୍କର ଏହିପରି ବହୁ ଭାଷଣ ଶୁଣିବାର ଅବକାଶ ମୋତେ ମିଳିଛି । ଭାଷଣ ଦେବାବେଳେ ସେ ପରିବେଶ ଓ ପୃଷ୍ଠଭୂମି ଭୁଲି ବିଷୟବସ୍ତୁ ସହିତ ଯେପରି ଏକାତ୍ମ ହୋଇପଡ଼ନ୍ତି ତା' ଅନେକ ସମୟରେ ପ୍ରଗଲ୍‌ଭତାର ସୀମାସ୍ପର୍ଶ କରିଯାଏ । କିନ୍ତୁ ସେ ସମ୍ପର୍କରେ ସେ ସମ୍ପୂର୍ଣ୍ଣ ନିର୍ଲିପ୍ତ । ଯାହାଙ୍କ ସାହିତ୍ୟ ସମ୍ପର୍କରେ ଆଲୋଚନା କରୁଛନ୍ତି, ତାଙ୍କ ପଦ-ପଦ୍ୟାବଳୀ ଉଦ୍ଧାର କରି, କେବେ ହସି ଓ ଶ୍ରୋତାମାନଙ୍କୁ ହସାଇ ଘଣ୍ଟାକଣ୍ଟା ମିନଟ୍ ପ୍ରତି ଚରମ ଉପେକ୍ଷା ପ୍ରକାଶକରି, ସେ କେବେ କ୍ଳାନ୍ତ ନହେବା ପର୍ଯ୍ୟନ୍ତ ଶ୍ରୋତାମଣ୍ଡଳୀଙ୍କୁ ସହଜରେ ଛାଡ଼ିବାପାଇଁ କୁଣ୍ଠିତ ହୁଅନ୍ତି । ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ଏ ପ୍ରକାର ରସଗ୍ରାହୀ ପରିବେଶକ ଓ ଆଲୋଚକ ମୁଁ ଖୁବ୍ କମ୍ ଦେଖିଛି । ସେ କେବେ ମଧ୍ୟ ଥିଲେ ଜଣେ କବି; ଯଦ୍ୟପି ଆଧୁନିକ କବିତାର ଫର୍ଦ୍ଦ ଓ ମାନଦଣ୍ଡରେ ତାଙ୍କ ସମାଲୋଚକମାନେ ତାଙ୍କୁ କବି ତାଲିକାରେ ସ୍ଥାନ ଦେଇନାହାନ୍ତି, କିନ୍ତୁ କବିତାର କୌଣସି କାଳ-ଚରିତ୍ର ନାହିଁ । କବିତା ସେ ଯେଉଁ ଯୁଗର ହେଉନା' କାହିଁକି— ରସୋତ୍ତୀର୍ଣ୍ଣ ହୋଇଥିଲେ ସେ କବିତା, ଏବଂ ତା'ର ସ୍ରଷ୍ଟା କବି । ଅଧ୍ୟାପକ

ଜୟକୃଷ୍ଣ ମିଶ୍ର ମଧ୍ୟ ଜଣେ ଥିଲେ ଉଚ୍ଚକୋଟୀର କବି,ଯଦ୍ୟପି ତାଙ୍କର ଶୈଳୀ ଥିଲା ମଧ୍ୟଯୁଗୀୟ । ତାଙ୍କର ଅକାଳ ବିୟୋଗରେ ଓଡ଼ିଆ ସାହିତ୍ୟର ଅପୂରଣୀୟ କ୍ଷତି ଘଟିଲା ବୋଲି କହିବାପାଇଁ ମୁଁ କୁଣ୍ଠିତ ହେବିନାହିଁ ।

ତାଙ୍କୁ କେନ୍ଦ୍ର କରି ଗୋଟିଏ ସ୍ମୃତି ମୋ ମନରେ ଗଭୀର ରେଖାପାତ କରିଛି ।' ଏହା ବହୁକାଳପାଇଁ ମୋ ସ୍ମୃତିରେ ଏକ ଯାଇତା ସମ୍ପଦ ହୋଇ ରହିବ । ବୋଧହୁଏ ବର୍ଷକ ତଳେ ରେଭେନ୍ସା କଲେଜକୁ ଜାତୀୟ ଗୌରବ ମଧୁସୂଦନଙ୍କ ସମ୍ପର୍କରେ ଭାଷଣ ଦେବାପାଇଁ ମୁଁ ଆମନ୍ତ୍ରିତ ହୋଇଯାଇଥିଲି । ସଭାପୂର୍ବରୁ ଔପଚାରିକ ଭାବରେ ପ୍ରିନ୍‌ସିପାଲ ଶ୍ରୀଯୁକ୍ତ ରାଉତଙ୍କ ଅଫିସ ପ୍ରକୋଷ୍ଠରେ ସାମାନ୍ୟ ଜଳଯୋଗ ଓ ଚା'ପାନର ବ୍ୟବସ୍ଥା ହୋଇଥିଲା ।

କେତେଜଣ ଅଧ୍ୟାପକଙ୍କ ଗହଣରେ ବସିଛି । ଭିତରକୁ ସୋଲ୍ଲାସ ଚିତ୍କାର କରି ମାଡ଼ିଆସିଲେ ଅଧ୍ୟାପକ ଜୟକୃଷ୍ଣ ମିଶ୍ର । ପିନ୍ଧିଥିଲେ ଗୋଟିଏ ଟ୍ରାଉଜର ଓ ବୁସ୍‌ସାର୍ଟ । ମୁହଁଟା ଦିଶୁଥିଲା ସାମାନ୍ୟ ବିବର୍ଣ୍ଣ । ମାତ୍ର ମୁହଁ ଭରି ହସର ଔଜ୍ଜ୍ୱଲ୍ୟସର ସେ ବିବର୍ଣ୍ଣତା ଆଖିରେ ପଡ଼ୁନଥିଲା । ହଠାତ୍ ମୋତେ ଆଲିଙ୍ଗନ କରିବାପାଇଁ ଆସୁ ଆସୁ ଗୋଟିଏ ଚଉକିରେ ଝୁଣ୍ଟି ତଳେ ପଡ଼ିଗଲେ । ତାଙ୍କ ଆଣ୍ଠୁ ଛିଡ଼ିଗଲା । ଅନ୍ୟ ଅଧ୍ୟାପକ ବନ୍ଧୁମାନେ ତାଙ୍କୁ ଉଠାଉଠି କରି ଓ ଏପରି ଚଞ୍ଚଳ ନ ହେବାପାଇଁ ଅନୁଯୋଗ କରି ମୋ ପାଖରେ ଆଣି ବସାଇଲେ ।

କୁଶଳ ଜିଜ୍ଞାସା ପରେ ମୁଁ ପଚାରିଲି "କିପରି ଅଛନ୍ତି " ? ତା'ପରେ ସେ ଯେ ବର୍ଣ୍ଣନା କଲେ କିପରି ଏକ ମାସମୃତ୍ୟୁ ହାର୍ଟ ଆଟାକ୍‌ରୁ ସେ ସଦ୍ୟ ଉଦ୍ଧାର ପାଇ ଏବେ U. G. Cର Visiting Prof ହୋଇ ରହିଛନ୍ତି । ସାଂସାରିକ ଦୃଷ୍ଟିରୁ ଜୀବନରେ କିଛି କରିପାରିଲେ ନାହିଁ । ସେଥିପାଇଁ ଅବଶୋଷ । ମୁଁ ତାଙ୍କୁ କହିଲି "ଆପଣ ତ ଅନ୍ୟମାନଙ୍କର ହାର୍ଟକୁ ଆଟାକ୍ କରନ୍ତି, ଆପଣଙ୍କର ପୁଣି ହାର୍ଟ ଆଟାକ୍ କ'ଣ ? ରସଶୋଷା ଦୋକାନୀମାନେ ଲକ୍ଷପତି ହୁଅନ୍ତି, କିନ୍ତୁ ରସିକମାନେ ଚିରଦିନ ଫକୀର । ଆପଣ କେବେ କିଛି କରିପାରି ନାହାନ୍ତି ବୋଲି ଦୁଃଖ କରିବାର କିଛି କାରଣ ନାହିଁ ।" ତା'ପରେ ସେଇ ପ୍ରାଣଖୋଲା ହସ । ସେଇଥିପାଇଁ ତ କହିଲି ତାଙ୍କର ଅକାଳ ବିୟୋଗରେ ଆଜି ଅନ୍ୟର ପ୍ରତିଷ୍ଠା କାତର ଯୁଗରେ ପ୍ରାଣଭରା ହସ ଓ ଅକୃତ୍ରିମ ବନ୍ଧୁତାର ଗୋଟିଏ ହୃଦୟ ହଜିଗଲା । ଏଇ କ୍ଷତି ପୂର୍ଣ୍ଣହେବାର ନୁହେଁ । ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରି ସେଇ ବନ୍ଧୁବରଙ୍କର ଉଦ୍ଦେଶ୍ୟରେ ମୋର ଶୋକାଞ୍ଜଳି ନିବେଦନ କରୁଅଛି ।



# ସ୍ମୃତି-ଶୋକ-ସଜଳ ଧାର

ମନମୋହିନୀ ଦେବୀ



ହେ ମହାନ୍ ! ହେ ମହାଉଦାରଚେତା କବି ଅଧ୍ୟାପକ !

ମନେ ପଡ଼େ ଆଜି, ହୃଦୟଟି ଆପଣଙ୍କର ଉଚ୍ଚ ମହତ୍ ଗୁଣରେ ପରିପୂର୍ଣ୍ଣ ହୋଇ ଅତୀବ ପ୍ରଶସ୍ତ ଥିଲା । ହାୟ ! ଆଜି ପାର୍ଥିବ ରୂପଟି ବିଦାୟ ନେଇଗଲା ଧରାପୃଷ୍ଠରୁ । କି ଦାରୁଣ ଏ ସମ୍ବାଦ । ଆଉ ଥରେ ଦେଖିପାରିଲି ନାହିଁ ମୁଁ ଆପଣଙ୍କୁ ।

ମନେପଡ଼େ ଆଜି, ୧୯୫୩-୫୪ ମସିହାରେ ଆପଣଙ୍କ ସଙ୍ଗେ ପ୍ରଥମ ଦେଖା । ଭାଇ ସାହେ (ପଣ୍ଡିତ ଅର୍ଜୁନ ମହାପାତ୍ର) ଯେ କି ଆପଣଙ୍କ ନିକଟରେ ଛାତ୍ରାବସ୍ଥାରୁ 'ପଣ୍ଡିତ' ନାମରେ ସମ୍ବୋଧିତ ହେଉଥିଲେ । ସେହି ଆପଣଙ୍କ ସଙ୍ଗେ ମୋର ପରିଚୟ ଘଟାଇଥିଲେ । ଗୋଟିଏ ଜଟିଳ ତର୍କ ଭିତରେ ଆପଣଙ୍କୁ ମୀମାଂସକ ରୂପେ ମୋ' ପାଖକୁ ଆଣିଥିଲେ । ଆମ ଦୁହିଁଙ୍କର ମନକୁ ଯେମିତି ଭଲ ସମାଧାନ କରିଥିଲେ ଆପଣ ।

ଭାବୁଛି, ପ୍ରିୟ-ବନ୍ଧୁ-ଆତ୍ମୀୟ-ସ୍ୱଜନଙ୍କ ବିରହ ଜୀବନେ କି ଅସହ୍ୟ ଦାହନୀୟ ହୋଇ ନଯାଏ ? ମୁଁ ମୋର କବିତାଗୁଚ୍ଛ "ଝରଣା" ବହିଟିରେ ଆପଣଙ୍କର ଶ୍ରଦ୍ଧାର ପ୍ରତିବିମ୍ବକୁ ନିତ୍ୟ ସନ୍ଦର୍ଶନ କରୁଥିଲି । ମାତ୍ର ଆପଣଙ୍କୁ ଦର୍ଶନ କରିବାର ସୁଯୋଗ ମତେ ଆଉ ମିଳୁନଥିଲା ।

ମନେପଡ଼ି ଯାଉଛି, ୧୯୭୩ ମସିହାରେ ହୃଦରୋଗରେ ଆକ୍ରାନ୍ତ ହୋଇ ଶ୍ରୀରାମଚନ୍ଦ୍ର ମେଡ଼ିକାଲ କଲେଜ ଚିକିତ୍ସାଳୟରେ ଆପଣ ଯେତେବେଳେ ଥିଲେ, ମୁଁ ମଧ୍ୟ ମୋ'ର ଭାଗ୍ୟଚକ୍ରରେ ଘୂରି ସେହିସ୍ଥାନରେ ଯାଇ ରହିଥିଲି । ସମ୍ବାଦ ପାଇ ମୁହୂର୍ତ୍ତିକ ଲାଗି ଯାଇ ଆପଣଙ୍କୁ ଦେଖିବାକୁ ପାଇଥିଲି । ଡ଼ାକ୍ତରମାନେ ସେତେବେଳେ ମନାକରିଥିଲେ କୌଣସି କଥାବାର୍ତ୍ତା କରିବାକୁ । ମତେ ଧୀରେ ଧୀରେ ଅନାଇଲେ; ମୁଁ କହିଲି "ମତେ ଆଉ ଚିହ୍ନିପାରିବେ ନାହିଁ ବୋଧହୁଏ ।" ଅତି ଆବେଗଭରା କଣ୍ଠରେ, ଟିକେ ହସିବାକୁ ଚେଷ୍ଟା କରିଥିଲେ ଆପଣ ।

ଆପଣଙ୍କର ସହଧର୍ମିଣୀଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ଆପଣଙ୍କ ହାଲ ବୁଝି ଚାଲିଆସିଲି । ଉପର ମହଲରେ ମୋର ସ୍ୱାମୀ ରୋଗଶଯ୍ୟାରେ ଥିଲେ । ପରେ ଦେଖାହେବ ଭାବିଥିଲି, ଆଉ ଥରେ ଆପଣଙ୍କ ସଙ୍ଗେ । କିନ୍ତୁ ସ୍ୱାମୀ ଟିକେ ସୁସ୍ଥ-ହୋଇ ଆସିବାରୁ ଡାକ୍ତରଖାନା ଛାଡ଼ି ଚାଲି ଆସିଲୁ । ସେ ପର୍ଯ୍ୟନ୍ତ ଆପଣ ଅସୁସ୍ଥ ଥିଲେ । ପରେ ଅବଶ୍ୟ ଶୁଣିଥିଲି ସୁସ୍ଥହୋଇ ଫେରିଗଲେଣିବୋଲି ।

ଆଜି ଭାବୁଛି ଆଉ ଦେଖାହୋଇ ପାରିଲା ନାହିଁ ମହାଶୟ ! ଜୀବନରେ ଦେଖା ହୋଇପାରିବ ନାହିଁ ଆଉ ମଧ୍ୟ । ବନ୍ଧୁହରା—ପ୍ରିୟଜନହରା ଶରୀର-ଜୀବନ-ମନ ଲାଗି ପରମେଶ୍ୱରଙ୍କର ଋଣ କିଛି କରିବାର ନ ଥାଏ ? ଜୀବନ-ପୋଥିରେ ଗୋଟିଏ ବିରାଟ ଅଧ୍ୟାୟ ଖୋଲିହୋଇ ରହିଗଲା କିନ୍ତୁ ଶୁଭଚିନ୍ତକ ମହାଶୟ !

ଆପଣଙ୍କର ଉପଦେଶାତ୍ମକ ଉତ୍ସାହପୂର୍ଣ୍ଣ ଅନେକ କବିତାମାନେ ମୋ ପାଖରେ ରହିଛି । ତାକୁ ସ୍ଥାୟୀକରି, ଅଦୃଶ୍ୟ ହୋଇଗଲେ ଆପଣ !

ସ୍ୱର୍ଗତ ଭାଇପାତ୍ରଙ୍କ କଥା ଆପଣଙ୍କୁ ଯାଇ କହିବି କହିବି ହୋଇ ଦୁର୍ଦୈବ ମତେ ଜଣାଇଦେଲା ନାହିଁ । ଏହା ପଶ୍ଚାତ୍ତାପ ରହିଗଲା ।

ହେ ଗୁଣଗ୍ରାହୀ ମନୀଷାର ପ୍ରତିମୂର୍ତ୍ତି !

ଆପଣ ଶତ ଶତ ହୀରା-ମୁକ୍ତା ମାଣିକ୍ୟାବଳୀ ଉତ୍କଳଭାରତୀ ଭଣ୍ଡାରରେ ସଞ୍ଚିତ ରଖି ଜାତିର ଭାଷାକୁ ବିପୁଲ-ପୁଷ୍କଲ-ଛବିଲ-ରଙ୍ଗିଲ ଆଭରଣରେ ସୌନ୍ଦର୍ଯ୍ୟମୟୀ କରି ଶରୀରକୁ ଗୋପ୍ୟକରି ଦିବ୍ୟ ସ୍ମୃତିକୁ ସ୍ଥିତିଶୀଳ କରିଗଲେ ।

ଜାଣିହୁଏ ନାହିଁ କିଛି, ଆତ୍ମା କେଉଁଠାକୁ ଗଲା ··· ···

ସେତିକି ଏ ମରପ୍ରାଣୀ ଦେଖିପାରୁଥା'ନ୍ତା ଭଲା ।

ପରମେଶ୍ୱର ! ଏ ମହାନ୍ ଶୁଦ୍ଧ-ପୂତ ଆତ୍ମାର ସଦ୍‌ଗତି ବିଧାନ କରନ୍ତୁ ।



# ଶ୍ରଦ୍ଧାଞ୍ଜଳି

ଶଂକର୍ଷଣ ମଂଗରାଜ

●

ଲୁହର ସୁଏ ଭସାଇ ମୋ କୋହର କାଗଜ ନଉକା
ଯାଉଁଣ୍ଣଇ ସୁଗନ୍ଧ ଫୁଲ ମଶାଣି ଅଙ୍ଗାରୁ
ଜୁଇର ଜହ୍ନଆ ଫୁଟେ
ମହକାଇ ଜଳସ୍ଥଳ ଗଗନ ପବନ
କୁହୁଡ଼ି ଗାମୁଛା ଦେହେ ଆଖି ପୋଛେ ହସକୁରା ଜହ୍ନ ।

ଜୀବନର ଫୁଲଦାନୀ ଝମେ ଝମେ ହୁଏ ପିକଦାନୀ
କଳମରୁ ଯଶ ଆସେ କାଲି
ମୋ ଲଂଠନ ଭାଙ୍ଗି ଯାଏ ଖଣ୍ଡଖଣ୍ଡ ହୋଇ
ଝଡର ଫଯାର ଯାଗ
ହା ହୁତାଶମୟ ଧୂଆଁ
କା ମୁହଁ ଆଇନା ଦେହେ ଦେଖାଯାଏ
ଗହଳିଆ ଆମ୍ବତୋଟା କୁହୁକୁହୁ ନଇ,
ଅନାହତ ବେଣ୍ଡ଼ି ପରେ
ବାଜୁଅଛୁ ଅସ୍ତ୍ରବ କୋରଡ଼ା
ଏ କଥାଟି ତୁମପାଇଁ, ମୋପାଇଁ, ସମସ୍ତଙ୍କ ସତ୍ୟ,

ହସି ହସି ଗାଇଯିବା ମଞ୍ଜୁଳା ମଣି ମାଳିନୀ.
ଛନ୍ଦ କବି, କାହାପକ୍ଷେ ସତ୍ୟ ।
ଅଂଶୁପା ହ୍ରଦ ଉପରେ ସୂର୍ଯ୍ୟ ଫିଙ୍ଗେ ଫଗୁ
ସପ୍ତଶଯ୍ୟା ଧାରୁ ଶୁଭେ କଳକଳ ଗୀତ
ଏ ସବୁ କାନ ପାଉବା
ଏବଂ ତାଳଦେଇ ଗାଇଯିବା ଜୀବନ ସଙ୍ଗୀତ
ଜଣାଯାଏ ସତେଅବା କେମିତ କେମିତ !!!

ଯଦ୍ୟପି ଜନ୍ମିବେ ଭକ୍ତ ଆଉ ଥରେ ଏ ମାଟିରେ କେବେ
ପ୍ରଥମେ ତୁମକୁ ଡାକି ହେ କବି ହେ ବାଗୀଶ୍ୱରବର,
ଝଙ୍କାର ନଭେ ନଭେ କୋଣେ ଅନୁକୋଣେ
ଆଉଥରେ ଗୁଞ୍ଜରିବ ତୁମ ଉଦ୍‌ଘୋଷଣା
ଯେତେଦିନ ଗାଉଥିବ ପ୍ରଭୁ ଗିଭନଧା
ସେତେଦିନ ବସିଥିବୁ ଆମେ ତୁମ ଗୁଣମୁଗ୍ଧ ଦଳ
ତୁମ ହସ ହସ ମୁଖୁଁ
ଆଉଥରେ ଶୁଣିବାକୁ ସ୍ନେହସିକ୍ତ ବାଣୀ
ଡାକେ ମାଟି, ଡାକେ ବନ, ଡାକେ ଲତା
ମୃତ୍ୟୁର ମହା ପ୍ରଳୟେ
କଣ୍ଠପୂତ ଜୟକୃଷ୍ଣ ଜୟକୃଷ୍ଣ ଉଠଇ ଉଚ୍ଛାସ ।

## ମିଛ ମଣିଷଟେ ..

ଡଃ ରତ୍ନାକର ଚଇନି

ଆମମାନଙ୍କ ଗହଣରୁ ଜଣେ ହସକୁଲା ଖେଳୁଆଡ଼୍ ଚାଲିଗଲେ । ଜୀବନରେ ଦୁଃଖ ତାଙ୍କ ସୀମା ମାଡ଼ି ପାରିନଥିଲା । ବୋଧହୁଏ ଦୁଃଖର ଠିକଣା ତାଙ୍କୁ ଜଣା ନଥିଲା । କିମ୍ବା ଦୁଃଖକୁ ସୀମାନ୍ତରେ ରଖି ସେ ସୁଖ ସହିତ ଖେଳୁଥିଲେ ଜୀବନ ପଡ଼ିଆରେ । ବାସ୍ତବରେ ଜୀବନର ପ୍ରତ୍ୟେକ ଘଟଣାକୁ ସେ ଖେଳୁଆଡ଼୍ ମନୋଭାବ ନେଇ ବିଚାର କରୁଥିଲେ । ପ୍ରତ୍ୟେକ କଥାରେ ମଜା ଉଡ଼ାଇବା ଥିଲା ତାଙ୍କର ଅଭ୍ୟାସ । ସେ ପର-ଆପଣା କ'ଣ ଜାଣି ନଥିଲେ । ସମସ୍ତେ ତାଙ୍କ ଦୃଷ୍ଟିରେ ତାଙ୍କ ନିଜ ଲୋକ । ଦାୟିତ୍ୱବୋଧ ଓ ବ୍ୟକ୍ତିତ୍ୱବୋଧ ତାଙ୍କୁ କେବେ ଦ୍ୱନ୍ଦ୍ୱରେ ପକାଇ ପାରୁ ନଥିଲା ।

ବେଳେ ବେଳେ ମନରେ ସନ୍ଦେହ ଜନ୍ମେ, ଆଜିର ଦୁନିଆରେ ଏଭଳି ସରଳ ଓ ଏଭଳି ସ୍ନେହୀ ମଣିଷ ହୋଇ ଚଳିବା କ'ଣ ସମ୍ଭବ ? ନା—ତେବେ ସେ କ'ଣ ଥିଲେ ତାହାର ଊର୍ଦ୍ଧ୍ୱରେ ? ......ମିଛ ମଣିଷଟେ......

## 'ରଜତ ଜୟନ୍ତୀ'

ନିରଞ୍ଜନ ସାହୁ
ଷଷ୍ଠ ବର୍ଷ ଓଡ଼ିଆ

●

ଆଜି ଅଜବ ଶୁଭୁଛି—
ସେଇ ବିଧବା ପତ୍ନୀର—ମୋ ପୁଅ—ମୋ ସ୍ୱାମୀ
ଜସ୍ତର୍ଥପର କଣ୍ଠରୁ ସେଇ କଣି କଣା ସ୍ୱର ।
ବିସ୍ତୀର୍ଣ୍ଣ ଜଙ୍ଗଲର ଗଛସବୁ ପତ୍ରଝଡ଼ା ଦେଲେ
ଶୁଷ୍କ ଆତ୍ମା ମନକୁ ଖୁବ୍ ବାଧେ
ଆପେ ଝୁରି ହୁଏ ସେଇ ପତ୍ର ସେଇ ପୁଷ୍ପ ।
ଯାହାସବୁ ଅଜ୍ଞାତ ପିଠିରେ—ସିଲ୍‌ହଟ୍ ଚାଖୁଥିଲା ।
ହାଇମାଳ ଚୁଲଉଥିବା ପିଅନଟା ହଠାତ୍
ଘଣ୍ଟିଟା ବଜାଇ ଦିଏ ଟିଣ୍-ଟିଣ୍-ଟିଣ୍ ।
ବେପାରରେ ଜମା ମନ ଲାଗେନି—
୪ଟା ବାଜି ଯାଆନ୍ତାକି—ଖୁବ୍ ଭଲ ହୁଅନ୍ତା;
କିନ୍ତୁ ସେ ସ୍କୁଲ—ସେ ଘଣ୍ଟା—ସେ ସାର୍
ପିଅନଟି ବି ଠିକ୍ ସେଇପରି,
ସମୟ ଆସେ ଘଣ୍ଟି ବାଜେ—ସ୍କୁଲ ଛୁଟିହୁଏ ।
ସ୍କୁଲ ଘଣ୍ଟିର ଶବ୍ଦରେ ଧୂଆଁ ବାଣ ମାରିଦେଇ
ଶବ୍ଦରେ ମିଶି ରଜତ ଜୟନ୍ତୀ ରଥରେ ଚଳିଲେ
ଚଢ଼ିଗଲେ 'ରଜତଶୃଙ୍ଗ' ଡମ୍ପ୍ସୀ କଣ୍ଠ ।
ନାହିଁ ମଧ୍ୟେ ହଁ,
ଦୁଃଖ ମଧ୍ୟେ ସୁଖର ସ୍ୱପ୍ନ,—ସେଇଠି—
ଆତ୍ମା କହେ ମଣିପଟା ମରିଗଲା ଖୁବ୍ ଭଲହେଲା,
ଯେତେ ସବୁ ମିଛ କାହାଣୀର ଅଭିନୟ ସାରି
ଯନ୍ତ୍ରଣାରୁ ତରିଗଲା ସତେ !

●

# କବିର ସଂସ୍କାର

ଡ଼ : ଶରତଚନ୍ଦ୍ର ପ୍ରଧାନ



ସ୍ୱର୍ଗତ ଜଦୁକୃଷ୍ଣ ମିଶ୍ର ମୋର ପୂଜ୍ୟ ଅଧ୍ୟାପକ। ସ୍ନେହ, ଶ୍ରଦ୍ଧା ଓ ଶୁଦ୍ଧ ବାତ୍ସଲ୍ୟର ମୂର୍ତ୍ତିମନ୍ତ ବିଗ୍ରହ। ବାଟଘାଟରେ ଯେଉଁଠି ଦେଖିଲେ ହସ ହସ ବଦନ। ଜିଭରେ କବିତ ଅଙ୍କୁ; କିମ୍ବା ଆଶୁ କବିତାଟିଏ। ସେ ବହୁ ସମୟରେ କହୁଥିଲେ—ନ ଋଷି ମୂକସ୍ୟ ଭାବନା। ଋଷି ମିଆଁ ସତେକି ତାଙ୍କ ଚିନ୍ତାଚେତନାର ଖୋରାକ। ତାପରେ କାବ୍ୟକବିତାର ଚର୍ଚ୍ଚା ଚାଲେ। ଅସରନ୍ତି ସୁଅ। ସ୍ମୃତି ଗଙ୍ଗୋତ୍ରୀରୁ ମଧ୍ୟଯୁଗୀୟ କାବ୍ୟକବିତାର ଜାହ୍ନବୀ ଧାରା। ଶ୍ରୋତାମାନଙ୍କୁ ମୁଗ୍ଧ କରେ। ସ୍ୱପ୍ନଲୋକର ପରିବେଶ ସୃଷ୍ଟି କରେ।

କାଲିପରି ମନେ ପଡ଼ୁଛି। ଅନର୍ସ କ୍ଲାସରେ ଲାବଣ୍ୟବତୀ ପଢ଼ା ଆରମ୍ଭ ହେଲା। ପ୍ରଥମ ଗ୍ରନ୍ଥ ଦୁଇବର୍ଷରେ ସରିଲା ନାହିଁ। ତେବେ କାବ୍ୟଯୁଗର କବିତା ସଙ୍ଗେ ଆତ୍ମୀୟତା ପ୍ରତିଷ୍ଠା ହୋଇ ଯାଉଥିଲା। ତାଙ୍କପରି ସ୍ମୃତିଧର ବାଗ୍ମୀ କ୍ୱଚିତ ଦେଖିବାକୁ ମିଳନ୍ତି। ଲାବଣ୍ୟବତୀ ଆଲୋଚନାବେଳେ ଆସୁଥିଲେ ଶ୍ରୀହର୍ଷ, ମାଘ ଭାରବୀ, କାଳିଦାସ, ଆସୁଥିଲେ ଓଡ଼ିଶାର ବିଦଗ୍ଧ କବିଏ ଏବଂ ମିଲଟନ, ବାଇରନ, ଓ୍ୱାଡ଼ସ୍‌ଓ୍ୱାର୍ଥ ପରି ବହୁ ପାଶ୍ଚାତ୍ୟ କବି। ତାଙ୍କର ସ୍ମୃତିର ଆକାଶ ବିଭିନ୍ନ କବିଙ୍କ କବିତା-ମେଘରେ ଭରି ହୋଇ ଯାଉଥିଲା। ଫଳରେ ଅନର୍ଗଳ ଭାବେ ରସ ବର୍ଷି ଯାଉଥିଲେ।

ରସସିକ୍ତ ଖିଆଲି ମଣିଷ ସେ। ସଂସାରର ଜୀବନ-ରଣରେ ସେ ବାରମ୍ବାର ହାରିଛନ୍ତି। ବଡ଼ ଅମିତବ୍ୟୟୀ, ଅମିତଭାଷୀ। କଥାକଥାକେ ରସିକତା ଏବଂ ସବୁଠି ସ୍ନେହମମତାର ଖେଳ। ୧୯୭୪ରେ ଏହି କବି ମଣିଷଟି ଭୁବନେଶ୍ୱର ଟେକ୍ସ୍ଟ ବୁକ ବ୍ୟୁରୋରେ ପହଞ୍ଚିଲେ। ଦେହ ଶୀର୍ଣ୍ଣ, ମୁଖ ମଳିନ। ସାରଙ୍କୁ ଦେଖି ତାଙ୍କ ଦେହ ସମ୍ପର୍କରେ ପଚାରିଲି। ସେ କହିଲେ—ହୃଦରୋଗରେ ପଡ଼ି ଏବେ ମୃତ୍ୟୁସଙ୍ଗେ ଯୁଦ୍ଧ କରି ଜିତି ଫେରିଛି। କିନ୍ତୁ ଆଜି ସଂସାର ଯନ୍ତ୍ରଣା ମୋତେ ବାଧୁଛି। ପୁଣି ଅଭାବ ଅସୁବିଧାର କାହାଣୀ ସେ କହି ଚାଲିଲେ। ବ୍ୟୁରୋର ପ୍ରକାଶୋନ୍ମୁଖ ପାଣ୍ଡୁଲିପି ସଂଶୋଧନ କରି କିଛି ପାରିଶ୍ରମିକ ମିଳିବାର ବ୍ୟବସ୍ଥା କରାଗଲା। ସାର୍ ସାମାନ୍ୟ ଜଳଯୋଗ କରି ବିଦାୟ ନେଇଆସିଲେ।

ଘଟଣାକ୍ରମେ ମୁଁ ବ୍ୟାଗେର ଭାଷା ବିଶେଷଜ୍ଞ ଦାୟିତ୍ୱରୁ ଅବ୍ୟାହତି ନେଇ ରେଭେନ୍ସାରେ ଅଧ୍ୟାପକ ଭାବେ ଅବସ୍ଥାପିତହେଲି । ଅଧ୍ୟାପକ ମିଶ୍ର ଆସିଲେ ସ୍ନା. କ. ସି ଅବସରପ୍ରାପ୍ତ ଅଧ୍ୟାପକ ରୂପେ । ସେ କଥା କଥାକେ ବ୍ୟାଗେର ସାହାଯ୍ୟ କଥା ଗପି ବସନ୍ତି, କୃତଜ୍ଞତା ଜଣାନ୍ତି, ଆଉ ଆଶୀର୍ବାଦ କରନ୍ତି । ସ୍ନାତକୋତ୍ତର ସେମିନାର କ୍ଲାସରେ ପୁଣି କବିର ସଂସାର ଗଢି ବସନ୍ତି । ତାଙ୍କ ରଚିତ 'କବିର ସଂସାର'ପରି ସେ କଳ୍ପଲୋକରେ ପୁଣି ପୁଣି ସଂସାର ଗଢିବସନ୍ତି । କିନ୍ତୁ ଆଜି ସେହି ଖିଆଲି କଳ୍ପନାବିଳାସୀ 'କବି' ଜୀବିତ ନାହାଁନ୍ତି । ଅଂଶୁପା, ମାଳ୍ୟଗିରି ଆଦି କବିଙ୍କୁ ଝୁରି ହେଉଛନ୍ତି । ଝୁରୁଛନ୍ତି ଅଗଣିତ ଛାତ୍ର । ଆତ୍ମୀୟ ସ୍ୱଜନ ଓ ଗୁଣମୁଗ୍ଧ ଶ୍ରୋତା ମଣ୍ଡଳୀ ।

●

## ଅଶ୍ରୁ ଅର୍ଘ୍ୟ

ପ୍ରଦୀପ୍ତ କୁମାର ଶ୍ରୀଚନ୍ଦନ
ଷଷ୍ଠବର୍ଷ ଓଡ଼ିଆ

●

ରେଭେନ୍ସାରେ ପାଦଦେଲା ଦିନ ପ୍ରଥମେ ମୁଁ ଆପଣଙ୍କୁହିଁ ଦେଖିଥିଲି । ଆପଣଙ୍କର ବନ୍ଧୁମାନେ କହୁଥିଲେ 'ଭାବଭୋଳା' । ଅଗଣିତ ଛାତ୍ରଙ୍କପାଇଁ ଆପଣ ଥିଲେ 'ଛାତ୍ରବତ୍ସଳ' । ମୁଁ ଅବଶ୍ୟ ଛାତ୍ରଟିଏ ଥିଲି । ତଥାପି ଆପଣଙ୍କର ବୟସୋଚିତ ସ୍ଥିତପ୍ରଜ୍ଞତା ଓ ଜ୍ଞାନପିପାସା ଯୁବକୋଚିତ କର୍ମ ଚଞ୍ଚଳତା ଓ କର୍ତ୍ତବ୍ୟନିଷ୍ଠା ଏବଂ ଶିଶୁଟିଏ ପରି ନିଷ୍ପାପ ମଧୁର ବ୍ୟବହାର ହସ ମୋତେ ବିମୁଗ୍ଧ କରିଥିଲା, ଅନୁରକ୍ତ କରିଥିଲା । ମୋର ମନେ ହେଉଥିଲା ଛୋଟ ପିଲାଟିଏ ପରି ଆପଣଙ୍କୁ କୋଳେଇ ଧରି ଆପଣଙ୍କ କପାଳରେ ବୋକଟିଏ ଦେଇ ପାରନ୍ତି କି । ଯୁବକଟିଏ ପରି ଆପଣଙ୍କ ସହ ହାତମିଳେଇ ବନ୍ଧୁ ହୋଇଯାଆନ୍ତି କି, କିମ୍ବା ଆପଣଙ୍କ ପ୍ରଶସ୍ତ ଛାତିକୁ ଆଉଜି ଯାଇ ଆପଣଙ୍କୁ 'ବାପା' ବୋଲି ଡାକି ପାରନ୍ତି କି !!!

କିନ୍ତୁ ମୁଁ କହୁ ପାରିଲି ନାହିଁ । ତା ପୂର୍ବରୁ କରାଳ ଶୀତର ଅସୁମାର ଶୁଷ୍କତା ମଧ୍ୟରେ ଆପଣ ଆମକୁ ଛାଡ଼ି ଚାଲିଗଲେ । ଯା'ପରେ ସତେ କ'ଣ ଆଉ ବସନ୍ତ ଆସିବ !!!

ଆଜୀବନ ଆପଣ ଶିକ୍ଷକ ହୋଇ ରହିଗଲେ—ଆପଣ ପଢ଼େଇ ଚାଲିଥାନ୍ତି 'କୁମାର ସମ୍ଭବ' କାଳିଦାସରୁ କବିସମ୍ରାଟ, କବିସମ୍ରାଟରୁ କବିବର ରାଧାନାଥ, କବିବର ରାଧାନାଥରୁ ପୁଣି କବି କୁଳଗୁରୁ କାଳିଦାସ ଆବେଗ ମନରେ ଭାସି ଚାଲିଥାନ୍ତି ଆପଣ, ଭସେଇ ଚାଲିଥାନ୍ତି ସମସ୍ତଙ୍କୁ । ଯଦାଥାଏ "ଗ୍ରହେପମାନା ଧରପତ୍ର ଶୋଭିନା" ବା "ତ" ପାକ୍ଷଃବେପଥୁମଣ୍ଡ ସରସାଙ୍ଗଯଷ୍ଟି" କିମ୍ବା କେଉଁଠି ବର୍ଷା ଝରୁଛି ପାର୍ବତୀଙ୍କ କେଶରୁ ଭ୍ରୂଲତାକୁ, ଭ୍ରୂଲତାରୁ ଓଷ୍ଠାଧରକୁ ଓ......ଏ ଭିତରେ ଘଣ୍ଟା ବାଜିଯାଏ ଆପଣଙ୍କୁ ଶୁଭେନି ? ନା— ଶୁଣିପାରନ୍ତିନି ଆପଣ ।

ଆଜି କିନ୍ତୁ ଶେଷ ଘଣ୍ଟାର ଶବ୍ଦକୁ ଆପଣ କାନଡ଼େର ଶୁଣିଲେ । ନ ଶୁଣି ଆଉ ବା କ'ଣ କରିଥାନ୍ତେ । ନିଜପାଇଁ ଆପଣ କିଛୁ କରିନାହାନ୍ତି । କେମିତି ସେ 'କବିର ସଂସାର' ଆପଣଙ୍କର । ଆପଣଙ୍କ ହସକାନ୍ଦ ଭିତରେ 'ଚରାଚର'ରେ 'ଅଶ୍ରୁଝିଧାର' ଖେଳଯାଏ । ଆପଣ ଆଜି ନାହାନ୍ତି, ଆମେ ସାହାରାମାନେ ଆଜି କାନ୍ଦୁଛୁ । ସେଇ ଅଶ୍ରୁଧାରରେ ସିକ୍ତ ହୋଇଛି ଆମର ନୀରସ ଶୁଷ୍କ ଜଡ଼ତା । ଆମ ଛାତି ଭିତରେ ସ୍ନେହ ମମତାର ବୀଜଟି ଅଙ୍କୁରିତ ହୋଇ ତାର ଡାଳରେ ଫୁଟି ଉଠିଛି ଫୁଲଟିଏ । ମୁଁ ଜାଣେ କରାଳ ଶୀତର ଏଇ ଅସୁମାର ଶୁଷ୍କତା ସତ୍ତ୍ୱେ ଫୁଲଟି ଫୁଟିବ, ବସନ୍ତ ଆସିବ; ବର୍ଷା ଆସିବ, ପୁଣି ଆସିବ ଶୀତ । ଆଉ ସେମାନଙ୍କର ଆସିବାଯିବା ମଧ୍ୟରେ ନିର୍ବିକାର, ନିର୍ଲିପ୍ତ, କିନ୍ତୁ ଅନୁରକ୍ତ ଫୁଲଟିଏ ତଥାପି ଫୁଟି ହସୁଥିବ ଆମ ହୃଦୟ ଭିତରେ । ସ୍ନେହ ମମତାର ସଖୀ ସମ୍ପ୍ରୀତିର, ଭକ୍ତିପ୍ରଣତିର, ଅଶ୍ରୁଆରତିର ସେଇ ଅମଳିନ ଫୁଲଟି ଆପଣଙ୍କ ସ୍ମୃତିରେ ମୋର ଅଶ୍ରୁର ଅର୍ଘ୍ୟ ।



# ଜୟକୃଷ୍ଣ ସ୍ମରଣିକା

ଶ୍ରୀ ଶ୍ୟାମାଚରଣ ଦାଶ
ଅଧ୍ୟାପକ, ସଂସ୍କୃତ ବିଭାଗ



ଆସୀତ୍ କାବ୍ୟକଳାକଳାପକୁଶଳୀ ବାଗ୍ମୀ ମହୋଦାରଧୀଃ
ବିଦ୍ୱାନ୍ ବୁଦ୍ଧିମତାଂ ବରିଷ୍ଠଃ ସୁକବିର୍ବିଦ୍ୟାବତାମଗ୍ରଣୀ ।
ଯତ୍ କର୍ଣ୍ଣାଭରଣ ଶ୍ରୁତୌ ସୁମଧୁରା ବାଣୀ ସୁଧାସ୍ରାବିଣୀ
ହା ହା ସ ଜଗତୋ ବିହାୟ ସକଳାନସ୍ମାନ୍ ସୁହୃଦ୍-ବାନ୍ଧବାନ୍ ।।୧।।

ଯତ୍କଣ୍ଠେ ସରଳା ମନୋହରମୟୀ ଗୀର୍ବାଣ ବାଣୀସ୍ଥିତା
ଯତ୍ ସ୍ୱାନ୍ତଂ ପରଦୁଃଖ ଦୁଃସହବ୍ୟଥାମାଲୋକ୍ୟ ନାସୀତ୍ ସ୍ଥିରମ୍ ।
ଯଦ୍ବାଣୀ ଶ୍ରବଣାସ୍ତୁ ଗୁରଚଜନା ମୁଗ୍ଧା ସମୁତ୍ସାହିତାଃ
ହା ହା ସ ଜଗତୋ ବିହାୟ ସକଳାନସ୍ମାନ୍ ସୁବନ୍ଧୁସ୍ଥିରମ୍ ।।୨।।

ଯୋଽୟଂ ସୁଶାସ୍ତ୍ରନିପୁଣୋ ବଲଭଦ୍ରସୂନୁଃ
ଖ୍ୟାତସ୍ତୁ ସଦ୍ଗୁଣଚୟୈର୍ଜୟକୃଷ୍ଣମିଶ୍ରଃ ।
ବିଜ୍ଞୋଽଭବତ୍ ବିବୁଧ ଭାରତୀଭାଷଣେଷୁ
କ୍ୱାପୌ ଗତେଧନସୁତାନ୍ ପରିହୃତ୍ୟ ସର୍ବାନ୍ ।।୩।।

ବିଭିନ୍ନ ଶାସ୍ତ୍ରେଷୁ ବିଚକ୍ଷଣୋଽସୌ
ପ୍ରାଧ୍ୟାପକୋଽଭୂତ୍ ବହୁକର୍ମକ୍ଷେତ୍ରେ ।
କବିତ୍ୱ-ଶକ୍ତିଂ ସକଳାଂ ତଦୀୟାଂ
ବୟଂ ସ୍ମରାମୋଽଖିଲ ସାଧୁବାଦୈଃ ।।୪।।

ଯତ୍କୀର୍ତ୍ତିଂ ଗିରିଂ ଘୁଣସନ୍ନିପାତେ—
ଯନ୍ନାମଧେୟଂ ଜୟକୃଷ୍ଣମାହୁଃ ।
ଯତ୍ ଭବମୂର୍ତ୍ତିଃ ସକଳେଷୁ ଭାତ
ତଂ ପଣ୍ଡିତଂ ବିଜ୍ଞଜନଃ ସ୍ମରନ୍ତୁ ।।୫।।

ଯସ୍ୟା-ନବଦ୍ୟା କବିତାସୁ ସୃଷ୍ଟି—
ମୁକ୍ତାବଲମୁକ୍ତ ତ ମାତୃ ପୂର୍ବା,

ପଦ୍ୟାତ୍ମିକା ଗଦ୍ୟମୟ୍ୟାତ୍ମିକା ଚ
ଶୋଭଷ୍ୟତେ ସା ଜନସଂସଦ ନଃ ॥୬॥

ସୁପଣ୍ଡିତଂ ବଜ୍ଞଜନାନୁରାଗିଣଂ
ମାହାତ୍ମ୍ୟକଂ ସାଧୁ ପ୍ରଗଲ୍‌ଭ-ବାଗ୍ମିନମ୍ ।
ସମୀକ୍ଷକଂ ଶ୍ରୁତଗୁଣୈଃ ସୁପୂଜିତ
ସ୍ମରନ୍ତି ତଂ ମାନଧନଂ ସୁହୃଜ୍ଜନାଃ ॥୭॥

କାପଟ୍ୟହୀନଂ ରସଶାସ୍ତ୍ର କୋବିଦଂ
ସୁବକ୍ତୃତା-ଦାନ-ବଶେଷ ଶାଳିନମ୍ ।
ସୁମିଷ୍ଟବାକ୍ୟୈ-ହୃତ-ସର୍ବମାନସଂ
ସ୍ମରନ୍ତି ନିତ୍ୟଂ ସୁବିଚକ୍ଷଣା ଜନାଃ ॥୮॥

ନମ୍ରଂ ବପୁଃ ସ୍ମେରମୁଖଂ ଚ ଯସ୍ୟ
ସୌଜନ୍ୟପୂର୍ଣ୍ଣଂ ମଧୁଭାଷିଣଂ ଚ,
ଶ୍ଳୋକାବଳିଂ ତସ୍ୟ ସୁକଣ୍ଠଗୀତାଂ
ସ୍ମରନ୍ତ୍ୟଜସ୍ର ସକଲାଃ ସୁବଜ୍ଞାଃ ॥୯॥

ସର୍ବେଷାଂ ହୃଦୟେ ଗାଢ଼,
କୃଷ୍ଣ କୃଷ୍ଣେତି ସର୍ବଦା
ସ ଭଥଂ ମିସ୍ମୃତେ ଲୋକେ
ଜସ୍ୱଶଦୋ ମୁଖେ ମୁଖେ ॥୧୦॥

ସରଳା ମଞ୍ଜୁଳା ରସ୍ୟା
ଜନମାନସ-ମୋହିନୀ
ସୁର ଭାରତୀ ଯତ୍‌କଣ୍ଠେ
ସୋଽମରେ ଭୁବି ସର୍ବଧା ॥୧୧॥

# ପୁଣ୍ୟଶ୍ଳୋକ ଜୟକୃଷ୍ଣ

ରାମେଶ୍ୱର ପ୍ରସାଦ
ଅଧ୍ୟାପକ, ହିନ୍ଦୀ ବିଭାଗ



ପୁଣ୍ୟଶ୍ଳୋକ ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କ ସଙ୍ଗେ ପ୍ରଥମ ପରିଚୟର ସୁଯୋଗ ମୋତେ ମିଳିଥିଲା ପୁରୁଷୋତ୍ତମ କ୍ଷେତ୍ରରେ । ମୁଁ ସେତେବେଳେ ପୁରୀସ୍ଥିତ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ ନୂଆ ଆରମ୍ଭ ହୋଇଥିବା ହିନ୍ଦୀ ବିଭାଗରେ ପ୍ରଥମ ଅଧ୍ୟାପକ । ଏହି ସମୟରେ ଅଧ୍ୟାପକ ମିଶ୍ର ସଂସ୍କୃତ ଓ ଓଡ଼ିଆ ବିଭାଗରେ ବଦଳି ହୋଇଆସି ଯୋଗଦେଲେ । ତାଙ୍କର ସରସ ମଧୁର ବ୍ୟକ୍ତିତ୍ୱରେ ଉକ୍ତ ବିଭାଗଟି ଉଦଭାସିତ ହୋଇ ଉଠିଥିଲା । ମୁଁ ସେତେବେଳେ ଦେଖୁଥିଲି ଯେ ଓଡ଼ିଆ ଛାତ୍ରମାନେ ତାଙ୍କ ଶ୍ରେଣୀରେ ଯୋଗଦେବାକୁ ଲାଳାୟିତ ହୋଇ ଉଠୁଥିଲେ । ପୁଣି ଯେଉଁ ଛାତ୍ରଙ୍କର ଓଡ଼ିଆ ବିଷୟ ନଥିଲା, ସେମାନେ ମଧ୍ୟ ବହୁ ସଂଖ୍ୟାରେ ତାଙ୍କ କ୍ଲାସରେ ଓଡ଼ିଆ ଭାଷଣ ଶୁଣିବାକୁ ଲୁଚି ଲୁଚି ରୁଣ୍ଡ ହେଉଥିଲେ । ଶ୍ରୀ ମିଶ୍ର ତାଙ୍କ କାବ୍ୟବ୍ୟାଖ୍ୟାନର ସରସ ମଧୁର ରସଧାରାରେ ସମସ୍ତଙ୍କୁ ମୁଗ୍ଧପୂତ ଅନୁପ୍ରାଣିତ କରି ଦେଉଥିଲେ ।

ଅଧ୍ୟାପକ ମିଶ୍ର ଓଡ଼ିଆରେ ଏମ୍. ଏ. ଡ଼ିଗ୍ରୀ ନେଇ ଓଡ଼ିଆ ଅଧ୍ୟାପନା କରୁଥିଲେହେଁ ସେ ସଂସ୍କୃତ ଭାଷାରେ ଏକ ମହାକାବ୍ୟ ରଚନାରେ ବ୍ରତୀ ଥିଲେ । ଏ ବିଷୟ ମୋର ସମଧର୍ମୀବନ୍ଧୁ ଇଂରାଜୀ ଅଧ୍ୟାପକ ସର୍ବେଶ୍ୱର ଦାସଙ୍କଠାରୁ ଶୁଣି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲି । ପରେ ଜାଣିବାକୁ ପାଇଲି ସଂସ୍କୃତ ଅଧ୍ୟାପକ ମିଶ୍ରଙ୍କ ବଂଶ ପରମ୍ପରାରେ ମଜ୍ଜାଗତ ସଂସ୍କାରର ଭାଷା ହୋଇ ରହିଛି । ତଥାପି ସ୍ୱଭାବସୁଲଭ ଆଶୁକାବ୍ୟ ରଚନା ଅସାଧାରଣ ପ୍ରତିଭା ବିନା ସମ୍ଭବ ନୁହେଁ । କିନ୍ତୁ ବଂଶଗତ ସଂସ୍କାର ଫଳରେ ଜୟକୃଷ୍ଣ ମିଶ୍ର 'ମାତୃ ମୁକ୍ତି ମୁକ୍ତାବଳୀ' ନାମଧେୟ ସଂସ୍କୃତ ମହାକାବ୍ୟ ପ୍ରଣୟନ କରି ଗଲିଥିଲେ ।

ସର୍ବେଶ୍ୱର ବାବୁଙ୍କ ପରି ସଂସ୍କୃତରେ ଜୟକୃଷ୍ଣ ମିଶ୍ର ମୋର ଭାଇନା ହୋଇଗଲେ ।

ସଂସ୍କୃତ ଗ୍ରନ୍ଥ ଓଡ଼ିଆ ଲିପିରେ ରଚିତ ଓ ମୁଦ୍ରିତ ହୁଏ, କିନ୍ତୁ ଶ୍ରୀ ମିଶ୍ର ତାଙ୍କ ସେହି ମହାକାବ୍ୟକୁ ଉଚ୍ଚାରଣ ସୌକାର୍ଯ୍ୟପାଇଁ ନାଗରୀ ଲିପିରେ ଲେଖୁଥିଲେ । ଦିନେ ସେ ମୋତେ ମହାକାବ୍ୟ ଦେଖିବା ଓ ତାର ଲିପି ସଂଶୋଧନ କରିବାଲାଗି ଡ଼ାକି କହିଲେ—"ଆରେ ରାମେଶ୍ୱର, ତୁ କଣ ଟିକେ ମୋ ବସାକୁ ଆସିବୁ ନାହିଁ, ମୋର ସଂସ୍କୃତ କାବ୍ୟ ହୁଦା, ନାଗରୀ ଅକ୍ଷରରେ ଲେଖୁଛି ତୁ ତାକୁ ଦେଖିକରି ଠିକ୍ କରିଦେବୁ !" ମୁଁ ତାଙ୍କର ପ୍ରତିଭା; ବିଦ୍ୱତ୍ତା ଓ ଅଗାଧ ପାଣ୍ଡିତ୍ୟର ପରିଚୟ ପାଇସାରିଥିଲି । ତାଙ୍କର ଏହି ସ୍ନେହପ୍ରବଣ ନିମନ୍ତ୍ରଣ ପାଇ ମୁଁ ବଡ଼ ସଙ୍କୋଚିତ ମନେକଲି । କାରଣ ଥିଲା—ମୁଁ ତାଙ୍କ ସଂସ୍କୃତ କାବ୍ୟର ବା କଣ ସଂଶୋଧନକରିବି । ମୁଁ ସେତେବେଳେ ସଂସ୍କୃତର ଲଟ୍ ଲକାର ମଧ୍ୟ ବୁଝୁ ନ ଥିଲି । ଏଣୁ ଅକ୍ଷମତା ଦର୍ଶାଇ ମୁଁ ବିନମ୍ରର ସହିତ କହିଲି—'ମୁଁ ବା କଣ ସଂଶୋଧନ କରିପାରିବି"। ଏହାପରେ ସେହି ବିଦଗ୍ଧ ଅଧ୍ୟାପକ କହି ଉଠିଲେ—"ଆରେ ନାଇଁରେ ତୁ ସବୁ କରିପାରିବୁ, ଓଡ଼ିଆ ଅକ୍ଷରରେ ମୁଁ ସର୍ବଦା ଲ ବଦଳରେ ଲ ଏବଂ ବ ବଦଳରେ 'ଵ' ଲେଖି ଦେଉଛି । ସଂସ୍କୃତରେ ତ ସେ ସେମିତି ହୁଏନାହିଁ । ତୁ ତ ହିନ୍ଦୀ ଜାଣିଚୁ, ତାର ଲିପି ତ ନାଗରୀ । ତୁ ତାକୁ କରିଦେଇ ପାରିବୁ । ମୁଁ ତୋ ସଙ୍ଗେ ବସିବି । ତୁ ଜରୁର ଆସିବୁ, ବୁଝିଲୁ ତ ?" ସେତେବେଳେ ଖସି ଯିବାର ଆଉ କିଛି ଉପାୟ ରହିଲା ନାହିଁ । ମୁଁ ହଁ ଭରିବାକୁ ବାଧ୍ୟ ହେଲି । କିନ୍ତୁ ତାଙ୍କର ସାରଲ୍ୟ ଓ ଅହଂକାର ଶୂନ୍ୟତା ମୋତେ ମୁଗ୍ଧ କଲା । ଶେଷରେ ମୋପରି ଜଣେ ଅସଂସ୍କୃତ ଲୋକ ଦ୍ୱାରା ସେ ତାଙ୍କର ପ୍ରତିଭାସ୍ଫୂର୍ତ୍ତି ମହାକାବ୍ୟ ସଂଶୋଧନ କରାଇବେ ।

ମୁଁ ଦୁଇ ତିନି ଦିନ ଧରି ଗଲି ତାଙ୍କ ପାଖରୁ ଜଳଖିଆ ଓ ପାନ ଖାଇବା ଲାଳସାରେ । ସେହି ମହାକାବ୍ୟର ଦୁଇ ତିନି ସର୍ଗ ତାଙ୍କ ସହିତ ପଢ଼ିଲି ଓ ତାର ଲେଖା ଅକ୍ଷର ସଂଶୋଧନ କରିବାକୁ ତାଙ୍କୁ ନମ୍ରତା ସହ କହିଲି । ଯଦିଓ ସେତେବେଳେ ମୁଁ ନିଜେ ସଂସ୍କୃତ ପଦ୍ୟ ଦୂରରେ ଥାଉ, ଗଦ୍ୟକୁ ମଧ୍ୟ ଶୁଦ୍ଧ ଉଚ୍ଚାରଣ ସହ ପାଠ କରିପାରୁ ନଥିଲି ମାତ୍ର ଏଇ ସେବା ଓ ସହଯୋଗରେ ସେ ବଡ଼ ଖୁସି ହୋଇ ପଡ଼ିଥିଲେ ।

ସେତେବେଳେ ୧୯୬୮-୬୯ରେ ବ୍ରହ୍ମପୁର କଲେଜରୁ ବଦଳି ହୋଇ ରେଭେନ୍ସାରେ ଯୋଗଦେଲି, ସେତେବେଳେ ପୁଣି ଆଉଥରେ ତାଙ୍କ ସହ ମିଶିବାର ସୌଭାଗ୍ୟ ମିଳିଲା । ସେତେବେଳେ ଅଧ୍ୟାପକ ମିଶ୍ର ବିଶ୍ୱବିଦ୍ୟାଳୟରୁ

ଅନୁଦାନ ଆୟୋଗଦ୍ୱାରା ପ୍ରଫେସର ବୃତ୍ତି ଯୋଜନା ଅନ୍ତର୍ଗତ ଓଡ଼ିଆ ବିଭାଗରେ ଅଧ୍ୟାପନା କରୁଥିଲେ । ପ୍ରଥମ ଦିନ ସେ ମୋତେ ଦେଖି ତାଙ୍କ ସ୍ନାନଘର ପରି ମୋତେ ଆଲିଙ୍ଗନ ପୂର୍ବକ ଗଦ ଗଦ ହୋଇ କୁହେଁଇ ପକାଇଲେ । ଏତେ ବେଳକୁ ୧୮ ବର୍ଷ ବିତି ଯାଇଥିଲା । ମୁଁ ଏଠାକୁ ଆସିଲି ବୋଲି ସେ ଖୁସିହେଲେ ଏବଂ କହିଲେ ମୋ ମହାକାବ୍ୟଟି ପ୍ରାୟ ପୂର୍ଣ୍ଣ ହୋଇଗଲାଣି । ତୁ ଘରେ ଆସି କରି ପୂର୍ଣି ଟିକୁ ଦେଖିଦେବୁ । ମୁଁ ଦିନେ ଡାକି ନେଇଯିବି ସେ...''ମୁଁ ବଡ଼ ଖୁସିରେ ନିଶ୍ଚୟ ଯିବି ବୋଲି କହିଥିଲି । ଅଧ୍ୟାପକ ମିଶ୍ରଙ୍କ ସେହି ସାଦର ନିମନ୍ତ୍ରଣ ଓ ମୋତେ ପୁଣି ସଂସ୍କୃତ ମହାକାବ୍ୟ ସଂଶୋଧନ ଗୌରବ ପ୍ରଦାନ କରିବେ ବୋଲି ଖୁସି ହେଉଥିଲି । କିନ୍ତୁ ଗତ ୧୦ ତାରିଖ ଡିସେମ୍ବର ୧୯୭୯ ଅପରାହ୍ଣରେ ହଠାତ୍ ଶୁଣିବାକୁ ପାଇଲି ଯେ ଜୟକୃଷ୍ଣବାବୁଙ୍କର ସକାଳ ସାଢ଼େ ୯ ବେଳେ ପରଲୋକ ହୋଇଯାଇଛି । ବଡ଼ ଆଘାତ ଲାଗିଲା ।

ଏ ସମୟରେ ତାଙ୍କର ସେଦିନର ଶେଷାମୁହଁ ମନେ ପଡ଼ିଲା । ତାହା ଜୁଲାଇ ଅଗଷ୍ଟ ମାସର କଥା । ଅଧ୍ୟାପକ ମିଶ୍ର ମ୍ଳାନ ଦେଖାଯାଉଥିଲେ । ସେ କହୁଥିଲେ—'ପ୍ରସାଦ ! ୟୁ. ଜି.ସି. ପୋଷ୍ଟ ଆଉ ଏକ୍ସଟେଣ୍ଡ ହେଲା ନାହିଁରେ । ପରିବାର ଚଳାଇବାର କଷ୍ଟ ବଢ଼ିଗଲା । ହେଉ ଭଗବାନଙ୍କ ଇଚ୍ଛା ।'' ଏବେ ଈଶ୍ୱର ତ ତାଙ୍କୁ ନେଇଗଲେ, କିନ୍ତୁ ଜୟକୃଷ୍ଣ ବାବୁଙ୍କ ପରି ଜନ୍ମଜାତ ରସମୟୀ ପ୍ରତିଭାସମ୍ପନ୍ନ ସଂସ୍କୃତ ମହାକବି ଓ ଛାତ୍ର ମିତ୍ର ବତ୍ସଳ ଅଧ୍ୟାପକ ଆଉ ମିଳିବେ କି ?



## ବଚନାତୀତ

ଡଃ ଧନେଶ୍ୱର ମହାପାତ୍ର



ବଚନ ସାହାଯ୍ୟରେ ବହୁ ଭାବ, ଅଭିଜ୍ଞତା ବା ଅନୁଭୂତ ବ୍ୟକ୍ତ କରାଯାଇପାରେ; କିନ୍ତୁ ଅଧ୍ୟାପକ ଜୟକୃଷ୍ଣ ମିଶ୍ର କି ପ୍ରକାର ଲୋକ ଥିଲେ, ତାହା ବଚନରେ ବ୍ୟକ୍ତ କରିବା ସମ୍ଭବ ନୁହେଁ । ତାହା କେବଳ ଉପଲବ୍‌ଧିର ବିଷୟ ।

ଜଗତରେ ବହୁ ପଣ୍ଡିତ, କବି ଥିଲେ ଏବଂ ଅଛନ୍ତି; ମାତ୍ର ତାଙ୍କ ପରି ନିରଭିମାନ ନିରହଂକାର, ସ୍ନେହୀ ପଣ୍ଡିତ, କବି କେହି ନଥିଲେ କି ନାହାନ୍ତି ।

କପଟ ତାଙ୍କ ହୃଦୟକୁ ସ୍ପର୍ଶ କରି ନଥିଲା । ମଣିଷଦ୍ୱାରା ପ୍ରତାରିତ ହେଲେ ମଧ୍ୟ ମଣିଷକୁ ସେ କଦାପି ଘୃଣାକରିବା ଶିଖି ନଥିଲେ । ସମସ୍ତଙ୍କୁ ଭଲ ପାଇବା ଥିଲା ତାଙ୍କ ଜୀବନର ବାସ୍ତବ, ଅଭ୍ରାନ୍ତ ଆଚରଣ ।

ଭର୍ତ୍ତୃହରି ଗାଇଛନ୍ତି—

"ପ୍ରାପ୍ତାଃ ଶ୍ରିୟଃ ସକଳକାମଦୁଘାସ୍ତତଃ କିମ
ଦତ୍ତଂ ପଦଂ ଶିରସି ବିଦ୍ୱିଷତାଂ ତତଃ କିମ୍ ।
ସନ୍ତର୍ପିତାଃ ପ୍ରଣୟିନୋ ବିଭବୈସ୍ତତଃ କିମ୍
କଳ୍ପଂ ସ୍ଥିତଂ ତନୁଭୃତାଂ ତନୁଭିସ୍ତତଃ କିମ୍ ।।"

ସକଳ କାମନା ପୂରଣ କରୁଥିବା ଧନସମ୍ପତ୍ତି ମିଳିଗଲା, ସେଥିରେ କଅଣ ? ଶତ୍ରୁମାନଙ୍କ ମୁଣ୍ଡରେ ପାଦ ରଖିଲ, ସେଥିରେ କଅଣ ? ଆତ୍ମୀୟ ସ୍ୱଜନମାନେ ସମ୍ପତ୍ତି ବିଭବରେ ସନ୍ତୋଷିତ ହେଲେ, ସେଥିରେ ବା କଅଣ ? ଶରୀର ଧାରଣକରି କଳ୍ପ କାଳ ବଞ୍ଚିଲେ, ସେଥିରେ କଅଣ ?

ସଂସ୍କୃତ ସାହିତ୍ୟର ମର୍ମଜ୍ଞ କବି ଜୟୀବାବୁ କାହିଁରେ କିଛି ସାର୍ଥକତା ଦେଖି ନାହାନ୍ତି । କେବଳ ସରସ୍ୱତୀଙ୍କ ଆରାଧନାକରି ଏବଂ ମଣିଷ ମାତ୍ରେ ସ୍ନେହ ପ୍ରଦାନକରି ସେ ଗନ୍ତବ୍ୟ ପଥରେ ଚାଲିଯାଇଛନ୍ତି ।



# ସ୍ମୃତି ପଥେ

ପ୍ରଦୀପ୍ତକୁମାର ଜେନା
ଷଷ୍ଠ ବର୍ଷ ଓଡ଼ିଆ



ତୈଳ ସରିଗଲେ ଦୀପ ଲିଭିଯାଏ ଏଇତ ଦୁନିଆଁ ନୀତି,
ତୈଳ ସରିଗଲା ଦୀପ ଲିଭୁ ନାହିଁ ଏକ ବିଚିତ୍ର ସ୍ଥିତି ।
ମନୁଷ୍ୟ ମରଣ ମନୁଷ୍ୟ ଜନମ ଜାଣୁ ନାହିଁ କେହି ଜଣେ,
ମନୁଷ୍ୟ ମରଣ ମନୁଷ୍ୟ ଜନମ ଜାଣୁଛନ୍ତି ସ୍ରଷ୍ଟା ଜଣେ ।
ଜଗ୍ଗୀ ବାବୁ ଆଜି ନାହାନ୍ତି ଜଗତେ ଏହା ତ ଅଟଇ ସତ୍ୟ,
ମୁଁ କହୁଛି ଆଜି ଅଛନ୍ତି ଜଗତେ ପୂର୍ବଠାରୁ ବଡ଼ ବ୍ୟସ୍ତ ।
ଲିଭିଗଲା ଦୀପ ଲିଭି ନାହିଁ ଜ୍ୟୋତି ଜଳିବ ସେ ବହୁଦିନ,
ତାଙ୍କ ସ୍ମୃତି ଦୀପ ଅଲିଭା ରହିବ ବଞ୍ଚିଥିବା ଯାଏ ଦେଶ ।
ଗତ ବରଷର ଟିପା ଖାତା ଗୋଟି ମନେ ପଡ଼େ ଆଜି ମୋର,
ଲେଖି ରଖିଥିଲି ଜଗ୍ଗୀ ବାବୁଙ୍କର କେତେ ଶ୍ଳୋକ ଅଳଙ୍କାର ।
ତାଙ୍କର ଶ୍ରେଣୀରେ ଛୁଟିଥିଲା ଦିନେ ରସ ମନ୍ଦାକିନୀ ଧାରା,
ରସକଲ୍ଲୋଳରେ ରସର କଲ୍ଲୋଳେ ମଜ୍ଜି ଥିଲେ ଶ୍ରେଣୀସାରା ।
ସମସ୍ତ ଶାସ୍ତ୍ରର ନିପୁଣ ଥିଲେ ସେ କିଛିନଥିଲା ଅଜଣା,
ସଂସ୍କୃତ ସାହିତ୍ୟ, ଇଂରାଜୀ ଭୂଗୋଳେ ବାଜୁଥିଲା ଜ୍ଞାନ ବୀଣା ।
ପାଣ୍ଡିତ୍ୟ ଝଙ୍କାର ଶୁଭିବନି ଆଉ ଲୁଚି ରହିଗଲା ପରା,
ପ୍ରତିଭା ତୁମର ଅକ୍ଷତ ରହିବ ଏହାହିଁ ମୋର କାମନା ।
ବଞ୍ଚିଛି ଓଡ଼ିଆ, ବଞ୍ଚିଛି ଏ ଜାତି ବଞ୍ଚିବ ତୁମର ସ୍ମୃତି,
ଯାଅ ଜଗ୍ଗୀବାବୁ ଦେଉଛୁ ମେଲାଣି ଦେଉଛୁ ଅଗରବତୀ ।



# ସ୍ମୃତିରୁ ଖିଏ

ମୁରଲୀମୋହନ ଜେନା



ଅଧ୍ୟାପକ ଜୟକୃଷ୍ଣମିଶ୍ରଙ୍କ ଦେହାନ୍ତ ମୋ ପକ୍ଷରେ କେତେ ମର୍ମନ୍ତୁଦ ହୃଦୟବିଦାରକ, ତାହା ମୁଁ ଭାଷାରେ ପ୍ରକାଶ କରି ପାରିବି ନାହିଁ । ତାଙ୍କ ବିୟୋଗରେ ମୋତେ ଲାଗୁଛି ଯେପରି ମୋ ପରିବାରରୁ ଜଣେ କେହି ଆତ୍ମୀୟ ଆମକୁ ଛାଡ଼ି ଗଲେ । ତାଙ୍କର ସ୍ନେହ, ସଦିଚ୍ଛା, ସହୃଦୟତା, ଉଦାରତା, ମଣିଷତା ଓ ସର୍ବୋପରି ପରକୁ ଆପଣା କରିବା କାଉଁଶି ସ୍ପର୍ଶର କିମିଆଁ ମନ୍ତ୍ର ଏ ଜୀବ ଥିବାଯାଏ ଅପାଶୋରା ହୋଇ ରହିବ । ତାଙ୍କର ହସ ହସ ସ୍ନେହବୋଳା ବାଣୀ ଆଖିଆଗରେ ବାରମ୍ବାର ନାଚି ଉଠୁଛି । ସେ କେବଳ ଆମର ଛାତ୍ରବତ୍ସଳ ଗୁରୁ ନଥିଲେ, ପରନ୍ତୁ ପୁତ୍ର ପ୍ରତି ପିତାର ଯେଉଁ ଅନାବିଳ ଓ ଅସରନ୍ତି ସ୍ନେହ ତାହା ସେ ଆମକୁ ବିତରି ଯାଇଛନ୍ତି । ଯାହା ଭାବି ବସିଲେ ଲୁହ ସମୁଦ୍ରରେ ଭାସିବାକୁ ହେଉଛି । ପୁଣି ତାଙ୍କର ଯେତିକି ଯେତିକି ଗୁଣ ସୁମରୁଛି ସେତିକି ସେତିକି ଏ ଆତ୍ମା ବିକଳ ହୋଇ ଉଠୁଛି ।

ଆମକୁ ତାଙ୍କର ଓଡ଼ିଆ ଏମ.ଏ. ଶ୍ରେଣୀରେ ସମସ୍ତ ପ୍ରାଚୀନ ସାହିତ୍ୟ ପଢ଼ାଇବାର ଆନ୍ତରିକତା ଓ ତନ୍ମୟତା ମୋର ଏବେବି ବିସ୍ମରଣ ହୋଇ ନାହିଁ । ବିଶେଷ କରି ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, କବିସୂର୍ଯ୍ୟ ଓ ସାମନ୍ତସିଂହାର ପ୍ରଭୃତି ପ୍ରାଚୀନ କବିମାନଙ୍କର କାବ୍ୟମାନ ସେ ଆଜକୁ ୨୫ ବର୍ଷ ତଳେ ଯେପରି ଭାବେ ପଢ଼ାଇ ନିଜେ ତନ୍ମୟ ହେବା ସଙ୍ଗେ ସଙ୍ଗେ ଆମକୁ ଯେପରି ସେହି କାବ୍ୟ ଓ କବିକୃତିରେ ତନ୍ମୟ ହେବାପାଇଁ ନିର୍ଦ୍ଦେଶ ଦେଉଥିଲେ । ତାହାହିଁ ତାଙ୍କ ଓଡ଼ିଆ ଅଧ୍ୟାପକ ଓ ଓଡ଼ିଆ ଅଧ୍ୟାପନାର ଶ୍ରେଷ୍ଠ ପରିଚୟ କହିଲେ ଚଳେ । କେବଳ ଏତିକି ନୁହେଁ, ବହୁ ପ୍ରାଚୀନ କବିଙ୍କର ସର୍ବଶ୍ରେଷ୍ଠ ଗ୍ରନ୍ଥମାନଙ୍କର ଇଂରାଜୀ ଅନୁବାଦ କରି କଲେଜ କ୍ଲାସରେ ତଥା ନିଜର ଭଡ଼ା ବାସଭବନରେ ଓଡ଼ିଆ ଗୀତ ବା ଗ୍ରନ୍ଥ ଓ ତାର ଅନୁବାଦ ଏକତ୍ର ନିଜର ସୁଲଳିତ କଣ୍ଠରେ ଆବୃତ୍ତି କରି ଆମକୁ ଯେପରି ଅଭିଭୂତ ଓ ଆତ୍ମହରା କରାଉଥିଲେ ତା'ର ପଟାନ୍ତର ନାହିଁ । ଜଣେ ଓଡ଼ିଆ ଓ ସଂସ୍କୃତ ସାହିତ୍ୟର ଗବେଷକଙ୍କର ଇଂରାଜୀଭାଷାରେ ଏପରି ପ୍ରଚଣ୍ଡ ଜ୍ଞାନ ଦେଖି ମୁଁ ବାରମ୍ବାର ବିସ୍ମିତ ହୋଇଛି । ବିଶେଷ କରି ଅଭିମନ୍ୟୁ

ସାମନ୍ତସିଂହାରଙ୍କର କେତୋଟି ଅତି ପ୍ରିୟ ଛନ୍ଦମାନଙ୍କର ତାଙ୍କ ଇଂରାଜୀ ଅନୁବାଦ ମୁଁ ଯେତିକି ଯେତିକି ପଢ଼ିଛି, ସେହି ବହୁମୁଖୀ ପ୍ରତିଭାଧାର ପୂଜ୍ୟ ଗୁରୁଦେବଙ୍କ ଚରଣରେ ଆପେ ଆପେ ମଥା ନଇଁ ଯାଇଛି ।

ମୁଁ ତାଙ୍କ ପରିବାରର ଜଣେ ବୋଲି ସେ ମୋତେ ବାରମ୍ବାର କହି ଆସିଛନ୍ତି । ତାହାହିଁ ମୋ ଜୀବନର ପରମ ଗୌରବ । ଏ ଜୀବନରେ ମୁଁ ତାଙ୍କର ଅତି ଆପଣାର ହୋଇ ପାରିଥିଲି । ବହୁ ବର୍ଷର ସମ୍ପର୍କ ବିଭିନ୍ନ ସମୟରେ ତାଙ୍କ ସହିତ ଆଳାପ ଆଲୋଚନା କରିବାର ସୁଯୋଗ ପାଇଛି,କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟ ସେ ଘର ହେଉ ବା ବାହାର ହେଉ,କାହାକୁ ରାଗିବାର ଓ ବିରକ୍ତ ହେବାର ଦେଖି ନାହିଁ । ଏଇଟା ତାଙ୍କର ମୋ ଆଖିରେ ମୋ ଅନୁଭବରେ ସବୁଠାରୁ ବଡ଼ ଗୁଣ । ଏଇଥି ଯୋଗୁଁହିଁ ସେ ସମସ୍ତଙ୍କର ଅତି ଆପଣାର ହେଲେ—ବୟସର ନିର୍ବିଶେଷରେ । ବାସ୍ତବିକ ତାଙ୍କର ଯେ କେହି ଜଣେ ଶତ୍ରୁ ଥିଲେ - ଏକଥା ବି ମୁଁ ମୋର ବହୁ ବର୍ଷର ଅନୁଭବରେ ଜାଣି ନାହିଁ । ମନେହୁଏ ଭଗବାନ ତାଙ୍କୁ ଜନ୍ମରୁ ଅଶ୍ରୁ ବିହୀନ କରି ଅଣିଥିଲେ । ତାଙ୍କ ଜୀବନର ଗୋଟିଏ ଗୋଟିଏ ସ୍ମୃତି ନିଖାରିଲେ ତାହା ଗୋଟିଏ ଗୋଟିଏ ପୁରାଣ ହେବ । ସେ କଥା ଯେତିକି ଯେତିକି ବି ହୁଏନି, ସେତିକି ସେତିକି ଲୁହ ଝରିବ ।

ଏମ. ଏ. ପଢ଼ୁଥିବା ବେଳର ଅନେକର ଘଟଣା ବଖାଣୁଛି । ସେଦିନ ସାର୍ ଘରୁ ନିଖାଇ ଟ୍ୟୁଟୋରିଆଲ କ୍ଲାସ ଥିବାରୁ ସକାଳ କଲେଜକୁ ଆସିଥାନ୍ତି । ଗୋଟାଏ ବେଳେ ଟିଫିନ କ୍ୟାରିଆରରେ ଖାଇବା ଆସିପହଞ୍ଚିଲା । ସେତେବେଳକୁ ପଞ୍ଚମ ବାର୍ଷିକ କଳା/ଷଷ୍ଠ ବାର୍ଷିକ କଳାର ୨।୩ଟି ଜେନେରାଲ କ୍ଲାସ ନେଇ ସାରିଲେଣି । ଖାଇବାକୁ ଖାଇବେଳକୁ ମୋତେ ଡାକିଲେ ତାଙ୍କ ସାଙ୍ଗରେ । ମୋ ଆଗରେ ମଧ୍ୟାହ୍ନ ଭୋଜନର ବାଟି ଖୋଲାଗଲା—ମୋତେ କହିଲେ ସାଙ୍ଗରେ ଖାଇବାକୁ । ସେଦିନ ମୋର ଦେହ ଅସୁସ୍ଥ ଥିବାରୁ ଭାତ ଖାଇବାକୁ ମନା କଲି । କିନ୍ତୁ ସାର୍ ନଛୋଡ଼ବନ୍ଧା—ଖାଇବାକୁ ପଡ଼ିବ । ମୋର କେତେ କାକୁତି ମିନତି ପରେ ସାର୍ଙ୍କ କବଳରୁ ମୁକ୍ତ ହେଲି ସତ, କିନ୍ତୁ ଯିବ କୁଆଡ଼େ, ମୋତେ ହୁକୁମ ହେଲା ସେଇଠି ବସିବାକୁ—ବସିଲି । ସାର ଖାଉଥାନ୍ତି ଶାଗ ଚୋଲଥାନ୍ତି । ସାହିତ୍ୟ ଚର୍ଚ୍ଚା ଚାଲିଯାଏ—ହଠାତ୍ ବେସନ ଗୋଳା କଖାରୁ ଫୁଲ ଭଜା ମୋତେ ବାଧ୍ୟକରି ଖୁଆଇଦେଇ କହିଲେ. ଅରେ ଏଇଟା ଟିକେ ଖାଇ ଦେଖିଲୁ; ଏଥିରେ ଓଡ଼ିଆତ୍ୱ ଅଛିତ ? ବାଡ଼ିରେ ଫଳିଥିବା କଖାରୁ ଫୁଲରେ ଏ ହୋଇଛି । ତୁ ଖାଇଲେ ମୋର ଆନନ୍ଦ । ଏମିତି କହୁ କହୁ

ଆଉ ଦୁଇଟି କଖାରୁଫୁଲ ଭଜା ଖୁଆଇ ଦେଲେ । ସେଦିନର ସେ ସ୍ମୃତି ବିସ୍ମରଣ ହେବ କିପରି ? ଏ ଜୀବନରେ ବହୁ ଗୁରୁଙ୍କର ସାନ୍ନିଧ୍ୟରେ ଆସିଛି; କିନ୍ତୁ ପିତାର ଅନାବିଲ ସ୍ନେହ ଜଗ୍ମୀବାବୁଙ୍କ ଛଡ଼ା ଆଉ ଦେବ କିଏ ? ତାଙ୍କର ମର ଦେହଟା ସିନା ଆମକୁ ଛାଡ଼ିଗଲା; ତାଙ୍କର ସଜଳ ସ୍ମୃତି ତ ଆମକୁ ବଞ୍ଚିଥିବାଯାଏ ବାରମ୍ବାର ବିବ୍ରତ, ବ୍ୟସ୍ତ ଓ ବ୍ୟାକୁଳ କରୁଥିବ, ସେ ମଣିଷ ପରି ମଣିଷଟାଏ ଥିଲେ । ଅଭାବ ଅନାଟନରେ ତାଙ୍କ ସମଗ୍ର ଜୀବନ ବିତିଛି—ବ୍ୟାଙ୍କ ବାଲାନସ୍ ନିଲ— (Nill) ତଥାପି ସେହି ସ୍ନେହ ପ୍ରବଣ ମଣିଷଟି ଭିତରେ ଯେଉଁ ମଣିଷତା ଥିଲା ତାହା ଆଉ ମିଳିବ ନାହିଁ କେଉଁଠି ? ସେ ମଣିଷ ରୂପରେ ମୋ ପାଖରେ ଦେବତା ଥିଲେ । ଆମ ହୃଦୟରେ ତାଙ୍କର ମମତ୍ୱବୋଧ ମଧ୍ୟରେ ସେ ମଣିଷରୁ ଦେବତା ହୋଇ ପାରିଥିଲେ । ତାଙ୍କର ସେହି ଆଶୀର୍ବାଦ ଏ ଚଲାପଥକୁ କୁସୁମିତ କରୁ । ଏତିକି ମାତ୍ର ମୋର ମାଗୁଣି ।

ତାଙ୍କ ରଚିତ କାବ୍ୟକବିତା, ସମାଲୋଚନା ଗ୍ରନ୍ଥ ଓ ବିଶେଷ କରି ତାଙ୍କ ସାଧନାର ଶ୍ରେଷ୍ଠକୃତି ସଂସ୍କୃତ ମହାକାବ୍ୟ "ମାତୃମୁକ୍ତି ମୁକ୍ତାବଳୀ" ଏ ସାହିତ୍ୟରେ ଅଶ୍ରୁତପୂର୍ବକ, ଅଭୂତପୂର୍ବ ଓ ଅନନ୍ୟସାଧାରଣ । ସେ ମରିବାର ମାସକ ପୂର୍ବରୁ ମୋତେ ସେ କାବ୍ୟରେ କେତେ ଅଂଶ ଶୁଣାଇବା ସଙ୍ଗେ ସଙ୍ଗେ ଏହି ସଂସ୍କୃତ ମହାକାବ୍ୟ ହିନ୍ଦୀରେ ଛପାଇବାପାଇଁ ଓଡ଼ିଆ ବାହାରକୁ ଯିବାକଥା ମୋ ଆଗରେ ଲୁହଗାଧୁଆ ହୋଇ କହୁଥିଲେ । କିନ୍ତୁ ବିଧିର ବିଧାନ ବିଚିତ୍ର । ସେଇ କାମ ସେଇଠି ରହିଲା । ସେ ଆମକୁ ଛାଡ଼ି ତାଙ୍କ ବାଟ ଧରିଲେ । ତାଙ୍କର ବାସନା ଅପୂର୍ଣ୍ଣ ରହିଲା । ମୁଁ ଭାବୁଛି ତାଙ୍କର ଅପୂର୍ଣ୍ଣ ଆଶାକୁ ପୂର୍ଣ୍ଣ କରିବା ଆମର କାର୍ଯ୍ୟ କର୍ତ୍ତବ୍ୟ । ସେଇତକ କର୍ତ୍ତବ୍ୟ ଆମେ ସାଙ୍ଗ କରିପାରିଲେ ଗୁରୁଦେବଙ୍କ ଆତ୍ମା ସେ ଶାନ୍ତି ଲାଭ କରିବ ; ଏହା ନିଶ୍ଚିତ କଥା ।

ତାଙ୍କ ଚିତାରେ ଆଖିରୁ ଲୁହ ଗଡ଼ି ଚାଲିଛି । ଶେଷ ଦର୍ଶନ କରି ମୁଣ୍ଡିଆଟିଏ ମାରି ପାରିଲି ନାହିଁ । ଆଉ କହିବାକୁ ଧୈର୍ଯ୍ୟ ନାହିଁ । ଏତିକିରେ ରହିଲି ।



# ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କ ସ୍ମୃତି ତର୍ପଣ

ଡଃ କୁଞ୍ଜବିହାରୀ ତ୍ରିପାଠୀ

●

ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କ ଅପ୍ରତ୍ୟାଶିତ ମୃତ୍ୟୁରେ ଓଡ଼ିଶାର ସାହିତ୍ୟିକ ଆକାଶରୁ ଏକ ସମୁଜ୍ଜ୍ୱଳ ଜ୍ୟୋତିଷ୍କର ତିରୋଧାନ ଘଟିଲା । କି ସଂସ୍କୃତ ସାହିତ୍ୟ କି ଓଡ଼ିଆ ସାହିତ୍ୟ—ଏ ଉଭୟ କ୍ଷେତ୍ରରେ ଜୟକୃଷ୍ଣବାବୁଙ୍କ ସୁଗଭୀର ପ୍ରବେଶ ଥିଲା । ସଂସ୍କୃତ ଭାଷା ଏବଂ ଓଡ଼ିଆଭାଷା—ଏ ଉଭୟରେ ତାଙ୍କର ମହୀୟସୀ ରଚନାଶକ୍ତି ଥିଲା । ତାଙ୍କର ବ୍ୟକ୍ତିତ୍ୱ ଥିଲା ଅସାଧାରଣ । ସେ ଥିଲେ ସରଳ-ବିଶ୍ୱାସୀ, ଅକପଟ ଏବଂ ଐହିକ ଧନ ସମ୍ପତ୍ତି ସଞ୍ଚୟରେ ଉଦାସୀନ ।

ରେଭେନ୍ସା କଲେଜରେ ବହୁବର୍ଷ ପର୍ଯ୍ୟନ୍ତ ସେ ମୋର ସହକର୍ମୀ ଭାବରେ କାର୍ଯ୍ୟ କରିଛନ୍ତି ଏବଂ ସଂସ୍କୃତ-ଓଡ଼ିଆ ବିଭାଗର ଅଧ୍ୟାପନା ଦାୟିତ୍ୱ ତୁଲାଇବାରେ ପ୍ରଚୁର ସାହାଯ୍ୟ କରିଛନ୍ତି । ସଂଖ୍ୟାଗରିଷ୍ଠ ଶ୍ରେଣୀମାନଙ୍କରେ ଓଡ଼ିଆ କାବ୍ୟକବିତା ଉପରେ ସମାଲୋଚନାତ୍ମକ ବକ୍ତୃତା ପ୍ରଦାନକରି ଅଗଣିତ ବିଦ୍ୟାର୍ଥୀ-ମାନଙ୍କର ସନ୍ତୋଷ ବିଧାନ କରିଛନ୍ତି । ବଡ଼ ବଡ଼ ସର୍ବସାଧାରଣ ସାହିତ୍ୟ ସଭାରେ ଓ ଭାଗବତ-ବ୍ୟାଖ୍ୟାନ ସଭାରେ ବକ୍ତୃତା ଦେବାରେ ସେ ଥିଲେ ଧୁରନ୍ଧର । ଏହିପରି ସଭାରେ ସଂସ୍କୃତ ମହାକାବ୍ୟ ସମୂହରୁ ଓ ପ୍ରାଚୀନ ଓଡ଼ିଆ ଭକ୍ତ-କାବ୍ୟରୁ ସୁଲଳିତ କଣ୍ଠରେ ଆବୃତ୍ତି କରି ଶ୍ରୋତୃମଣ୍ଡଳୀକୁ ମନ୍ତ୍ରମୁଗ୍ଧ କରି ରଖିବା ଭଳି ଶକ୍ତିର ସେ ଥିଲେ ଅଧିକାରୀ ।

ବାଙ୍କୀ, ବରେନ୍ଦ୍ର ବିଦ୍ୟାପୀଠ ପରିସର ସଂଲଗ୍ନ ଖମାରଙ୍ଗ ଗ୍ରାମରୁ ତାଙ୍କର ପିତାଙ୍କୁ, ଓଡ଼ିଶାର ପ୍ରସିଦ୍ଧ ପଣ୍ଡିତ ଭୁବନେଶ୍ୱର ମିଶ୍ର ବଡ଼ପଣ୍ଡା (୧୮୭୦-୧୯୧୦) ତାଙ୍କ ଭଗିରଆସ୍ଥ ଗ୍ରାମକୁ ପୋଷ୍ୟପୁତ୍ର ରୂପେ ନେଇଥିଲେ । ସଂସ୍କୃତ ସାହିତ୍ୟ ପ୍ରତି ବଡ଼ପଣ୍ଡାଙ୍କର ଅବଦାନଯୋଗୁଁ ସେ ତଦାନୀନ୍ତନ ବାମଣ୍ଡା ରାଜଦରବାରରେ ସମ୍ମାନିତ ହୋଇଥିଲେ । ବଡ଼ପଣ୍ଡାଙ୍କ ବିରଚିତ ଚମ୍ପୂରୁ ଅନେକ ପଦାବଳୀ, ତଥା ତାଙ୍କର ଅନ୍ୟ କେତେକ ସଂସ୍କୃତ ସୁଭାଷିତ ଜୟକୃଷ୍ଣବାବୁ କେବେ କେବେ ମୋତେ ଶୁଣାଇ ଆନନ୍ଦ ପ୍ରଦାନ କରୁଥିଲେ । ଜୟକୃଷ୍ଣ ବାବୁଙ୍କ ସୌଜନ୍ୟରୁ ବଡ଼ପଣ୍ଡାଙ୍କର

କେତୋଟି ସଂସ୍କୃତ କବିତା ମୋର 'ସଂସ୍କୃତ ସାହିତ୍ୟକୁ ଉତ୍କଳର ଦାନ, ଶୀର୍ଷକ ଗ୍ରନ୍ଥର ପୃ [illegible]-[illegible] ପୃଷ୍ଠାରେ ପ୍ରକାଶିତ ହୋଇଅଛି । ସେଥିରୁ ଗୋଟିଏ ଶ୍ଳୋକ ହେଲା—

ନ ତରକରଂ ମୋହରୁ ନ ମାସ ରପଙ୍କାଲକ,
ନ ଧର୍ମପସ୍ପୃଦା ତୋମୂ ନ ମାର ଜନକାସିର ।

ପ୍ରାନ୍ତରୁ ପାଠକଲେ ଏହା ଗୋଟିଏ ଓଡ଼ିଆ କବିତା ।

ଜନ୍ମକୃଷ୍ଣ ବାବୁ ଏବଂ ମୁଁ ଝାଙ୍କୀ ସହିତ ସମ୍ପୃକ୍ତ ଥିବାରୁ, ଉଭୟେ ଝାଙ୍କୀ ଉଚ୍ଚ ବିଦ୍ୟାଳୟ (ବର୍ତ୍ତମାନ ବିବେକାନନ୍ଦ ବିଦ୍ୟାପୀଠ)ର ପୂର୍ବତନ ଛାତ୍ର ଥିବାରୁ ରେଭେନ୍ସା କଲେଜରେ ବହୁବର୍ଷ ଉଭୟେ ଏକ ବିଭାଗରେ ଅଧ୍ୟାପକ ଥିବାରୁ ମୁଁ ତାଙ୍କଠାରୁ କେତେବର୍ଷ ବୟସରେ ବଡ଼ହେଲେ ମଧ୍ୟ, ଆମ୍ଭ ଦୁହିଁଙ୍କ ମଧ୍ୟରେ ଅକୃତ୍ରିମ ସୌହାର୍ଦ୍ଦ୍ୟ ବଦ୍ଧମୂଳ ହୋଇଥିଲା । ଗତବର୍ଷ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଉଭୟେ ପରିଦର୍ଶୀ ଅଧ୍ୟାପକ ଭାବରେ ଥିଲାବେଳେ କେତେକ ସପ୍ତାହ ଅତିଥି ଭବନରେ ଏକତ୍ର ଅବସ୍ଥାନ ଯୋଗୁଁ ତାଙ୍କ ପରିବାର ସହିତ ବିଶେଷଭାବରେ ପରିଚିତ ହୋଇ ଆନନ୍ଦିତ ହୋଇଥିଲି । ତାଙ୍କ ବିୟୋଗରେ ସପରିବାର ମୁଁ ବିଶେଷତଃ ଦୁଃଖୀ । ସ୍ୱର୍ଗତ ଆତ୍ମାର ମଙ୍ଗଳ ମନାସି, ଶୋକସନ୍ତପ୍ତ ପରିବାରକୁ ଶାନ୍ତିପ୍ରଦାନ କରିବା ଲାଗି ପ୍ରଭୁଙ୍କୁ ପ୍ରାର୍ଥନା କରୁଅଛି ।

●

## ଆଚାର୍ଯ୍ୟ ଜନ୍ମକୃଷ୍ଣ

ଡଃ କ୍ଷେତ୍ରବାସୀ ନାୟକ

●

ଆଚାର୍ଯ୍ୟ ଜନ୍ମକୃଷ୍ଣଙ୍କର ତିରୋଭାବ ଆମ ଭଳି ସ୍ନେହ-ମମତାରଂକ ଛାତ୍ର କୁଳଙ୍କ ପକ୍ଷରେ ଏକ ଅପୂରଣୀୟ କ୍ଷତି । ଜନ୍ମକୃଷ୍ଣ ସାଧାରଣ ଅଧ୍ୟାପକ ନଥିଲେ, ସେ ଥିଲେ ଗୁରୁକୁଳ ଆଦର୍ଶର ଆଚାର୍ଯ୍ୟ—ଉଦାରମନା ପ୍ରଶସ୍ତ ହୃଦୟ । ତାଙ୍କୁ ସାକ୍ଷାତ କଲାମାତ୍ରେ ମନ ଆନନ୍ଦରେ ପୂରି ଉଠୁଥିଲା । କ୍ଳାସରେ କିମ୍ବା ସଭା ମଞ୍ଚରେ ବକ୍ତୃତା ଶୁଣିବା ବେଳେ ମନ ମଜ୍ଜି ଯାଉଥିଲା । ପ୍ରାଚୀନ ସାହିତ୍ୟ ଆଲୋଚନାରେ ସେ ଥିଲେ ପ୍ରବୀଣ । ସାହିତ୍ୟକୁ ଅନ୍ତର ଦେଇ ଭଲ ପାଉଥିଲେ । ସାହିତ୍ୟ ରସ ଉପଲବ୍ଧି କରି ନିଜେ ଶିହରି ଉଠୁଥିଲେ, ଶ୍ରୋତାଙ୍କୁ ସେପରି ରସ କଣିକା ମଧ୍ୟ ବିତରଣ କରୁଥିଲେ । ଜଣେ ବିଦଗ୍ଧ କବି, ସଂସ୍କୃତଜ୍ଞ ପଣ୍ଡିତ, ସାହିତ୍ୟ ସମାଲୋଚକ, ବହୁଦର୍ଶୀ ଆଚାର୍ଯ୍ୟ ଜନ୍ମକୃଷ୍ଣ ଥିଲେ ଉତ୍ତର ଦାୟାଦଙ୍କ ପ୍ରେରଣାର ଉତ୍ସ । ଜନ୍ମକୃଷ୍ଣଙ୍କର ଅମ୍ଳାନ ପ୍ରତିଭାର ଚରଣତଳେ ବିନମ୍ର ଶ୍ରଦ୍ଧାଞ୍ଜଳି ନିବେଦନ କରି ଗୁରୁଦେବଙ୍କର ଅର୍ଚ୍ଚନା କରୁଛି ମାତ୍ର ।

●

# ସ୍ମୃତି ଅର୍ଚ୍ଚନା

ଗୌତମ ଜେନା
ଷଷ୍ଠ ବର୍ଷ ଓଡ଼ିଆ

●

କବି ଚେତନାର ଅନନ୍ତ ବୁଭୁକ୍ଷା ଭିତରେ ମନ ଓ ମନନର ଏକାତ୍ମୀକରଣର ଯେଉଁ ବହିଃସ୍ଫୁରଣ ଘଟିଲା, ତାହାରେ ନିଜକୁ ଚିହ୍ନିବାର କଳାକୌଶଳ ଭିତରେ ସେ ଆତ୍ମଗୋପନ କଲା କେଉଁ ଏକ ଅଦୃଶ୍ୟ ହାତର ନିବିଡ଼ ଅନ୍ଧାରରେ । କୌତୂହଳମୟ ଦାଣ୍ଡୁଆ ସତ୍ୟର ସ୍ୱାକ୍ଷର ଯେଉଁଠି ସ୍ପଷ୍ଟ, ସେଠି ନିଜେ ହଜିଯିବାର ହୁଏତ କୌଣସି ଗ୍ଲାନିବୋଧ ନ ଥାଇପାରେ । କିନ୍ତୁ ଅଫଳନ୍ତ ମୁହୂର୍ତ୍ତଗୁଡ଼ିକୁ ସ୍ତବ୍ଧ କରି କେହି କେବେ ପରିକଳ୍ପନା କରେନା ନିଜେ ପୁଣି ଅନେକରୁ ଦୂରେଇ ଯିବାକୁ । ଅନିଚ୍ଛା ସତ୍ତ୍ୱେ ବି ଜଣେ ସେହି ସ୍ଥାନରେ ପାଦ ପକାଇବାକୁ ପଡ଼େ । ହେଲେ, ସ୍ନେହ ପ୍ରୀତିର ଚଉହଦିକୁ ଲଙ୍ଘି ଦେଇ ପାରେନା ସମୟର ପ୍ରତାରଣା । ସେଇ ନିଜର ମଣିଷ ପୁଣି ଏହି ସ୍ନେହ ପ୍ରୀତିର ଜୁଆର ଭିତରେ ସ୍ମୃତି ହୋଇ ବଞ୍ଚିରହେ ଦରିଆରେ ଢେଉଙ୍କର ଲୁଚକାଳି ଖେଳପରି ।

ଆମ ମନଭିତରେ ଆଜି ଇତସ୍ତତଃ ଦୁଃଖର ଫୁଲସବୁ ବିଛୁଡ଼ି ହୋଇ ଅତୀତର ସେଇ ଉଜୁଡ଼ି ଯାଇଥିବା ସ୍ମୃତିକୁ ମନେପକାଇ ଦେଉଛନ୍ତି ଯେ-ଆମ ଦେହର କୌଣସି ଏକ ସ୍ଥାନ ଯେମିତି ଖାଲି ଖାଲି ଲାଗୁଚି । ଆମେ କଷ୍ଟ ପାଉଚେ ସେଇ ଅପୂରଣୀୟ କ୍ଷତି ପାଇଁ ।

ଚହଲା ଚହଲା ମୁହୂର୍ତ୍ତଟିଏ ବର୍ତ୍ତମାନ ଆମ ଦୃଷ୍ଟିର ଅନ୍ତରାଳରେ । ଏପରିକି ଆମ ଭାବରାଜ୍ୟ ତରଙ୍ଗାୟିତ ଯେ-ଜଣେ ବରିଷ୍ଠ ସାହିତ୍ୟିକ, ପଣ୍ଡିତ ତଥା ଜଣେ ସୁବକ୍ତା ଆମଠାରୁ ବିଦାୟ ନେଇ ଚହଲାମାଟିକୁ ଅଚହଲାକରି ଚାଲିଯାଇଛନ୍ତି । ଯାହାହେଲେ ବି ସେଇ ହସ ହସ ମୁହଁଟି ଆମର ମନ ଭିତରେ ବଞ୍ଚିରହିଥିବ, ଯେତେଦିନ ପର୍ଯ୍ୟନ୍ତ ସାହିତ୍ୟର ଅଗଣାରେ କଳାଶ୍ରୁସ୍ନାର ସ୍ୱଜନ୍ତ ନଥିବ ।

ଜୀବନର ଗତି ସର୍ବଦା ଚଞ୍ଚଳ । ସୀମାହୀନ ଦୁଃଖର ବନ୍ଧନୀକୁ ଶୂନ୍ୟକରି ଯିଏ ସୁଖୀ ହୋଇପାରିଲା, ସେହି କଳ୍ପନାବାଦୀ, କବି, ଭାବୁକ, ଲେଖକ । ନିଜର କଳ୍ପନା ଭିତରେ ବାସ୍ତବତାର ଭୟଙ୍କର ଦୃଶ୍ୟକୁ ଲୁଚାଇ ସେ ହୁଏ ସୁଖର

ଅନ୍ୱେଷୀ । କବି ଜୟକୃଷ୍ଣ ମିଶ୍ରଙ୍କର ବ୍ୟକ୍ତିଗତ ସମ୍ପର୍କରେ ନିବଡ଼ ଭାବରେ ମିଶିଏ ଆସିଛୁ, ସେ ହୃଏତ ଅନୁଭବ କରିପାରିଥିବ ତାଙ୍କର ମାନସିକ ସ୍ଥିତି ସ୍ଥାପକତାର ଏକକ ସୀମା । ଅଭାବ ଓ ଅନାଟନ ଭିତରେ ବାଲ୍ୟକାଳରୁ ପରିଣତ ବୟସ ପର୍ଯ୍ୟନ୍ତ ଥାଇ ମଧ୍ୟ ସେ ନିଜକୁ ଅଭାଗୀ ଭାବରେ କେବେ ବୁଝିବାକୁ ଚେଷ୍ଟାକରି ନାହାନ୍ତି । ହସି ହସାଇବାରେ ସେହି ଅନ୍ତହୃଦୁକା ଚରିତ୍ରଟି ବ୍ରହ୍ମହୋଇ ଆଜି ଆମ ପାଖରୁ ବିଦାୟ ନେଇ ଯାଇଛନ୍ତି ।

ଏହି ଜୀବନର ସ୍ଥିତି କ୍ଷଣଭଙ୍ଗୁର । ଏହି ବଂଚବାର ହିସାବ ନିକାଶ ଭିତରେ ସ୍ଥାନ ପାଏ କର୍ମଯୋଗୀ ପୁରୁଷ । ଏହି ପରିପ୍ରେକ୍ଷୀରେ ତାଙ୍କର ସାହିତ୍ୟ କୃତୀକୁ ବିଚାର କରିବା ଆବଶ୍ୟକ । ତାଙ୍କର ପ୍ରକାଶିତ ୪।୦ ଗୋଟି ଖଂଡକାବ୍ୟ (ସିଂହନାଥ, ଅଂଶୁଗା, ସପ୍ତଶଯ୍ୟା, ଚନ୍ଦ୍ରିକା, କପିଳାସ, ମାଳଗିରି, ସୁବର୍ଣ୍ଣମେରୁ, ମନୋରମା), ଆଲୋଚନା ଓ ସମାଲୋଚନା ପୁସ୍ତକ ଓଡ଼ିଆ ସାହିତ୍ୟର ଭଣ୍ଡାରକୁ ଯେ ସମୃଦ୍ଧ କରିଛୁ ଏଥିରେ ସନ୍ଦେହ ନାହିଁ । ପୁନଶ୍ଚ ତାଙ୍କର ଅପ୍ରକାଶିତ ସଂସ୍କୃତ ମହାକାବ୍ୟ 'ମାତୃମୂକ୍ତ ମୁକ୍ତାବଳୀ' ଏ ଜାତିପାଇଁ ଏକ ମହାନ୍ ଦାନ । ଖଣ୍ଡ କାବ୍ୟଗୁଡ଼ିକର ଭାଷା ସରଳ ଓ ମନୋରମ ତଥା କଳାତ୍ମକ । କବି ହୃଦୟରେ ଭାବୋଚ୍ଛ୍ୱାସ ସ୍ୱଚ୍ଛନ୍ଦ ଗତିରେ ଗତିଶୀଳ । ପ୍ରକୃତିର ଉପାସନା ଭିତରେ ମାନବିକ ବୋଧର ସମନ୍ୱୟ ତାଙ୍କ ପ୍ରତିଭାର ଅନ୍ୟଏକ ଦିଗ ରୂପେ ପରିଦୃଷ୍ଟ ହୁଏ ।

କେବଳ କବି ଭାବରେ ନୁହେଁ, ଜଣେ ବାଗ୍ମୀ ଭାବରେ ମଧ୍ୟ ସେ ଓଡ଼ିଶାରେ ସୁପରିଚିତ । ତାଙ୍କର ଅନର୍ଗଳ ବକ୍ତୃତାର ସ୍ରୋତ ଯେ କୌଣସି ଶ୍ରୋତାଙ୍କୁ ମନ୍ତ୍ରମୁଗ୍ଧ କରି ଘନ ଘନ ଧରି ବସାଇ ଦେଇ ପାରିବ । ଓଜସ୍ୱିନୀ ଭାଷାର ଉଚ୍ଛ୍ୱଳ ପ୍ରବାହରେ ନିଜକୁ ନିଜଠାରେ ହଜାଇ ଦେଇ ଖୋଜିବାର ଆଶା ଭିତରେ ସେ ବାଗ୍ମୀ ଜଣକ ଅଜି ଆମ ଭାବରାଜ୍ୟକୁ ଆନ୍ଦୋଳିତ କରୁଛନ୍ତି । ଏପରିକି ଜଣେ ଆଦର୍ଶ ଶିକ୍ଷକ ଓ ଅଧ୍ୟାପକଭାବରେ ସେ ତାଙ୍କର କର୍ମମୟଜୀବନ ଭିତରେ ସୁଖ୍ୟାତିର ଅଧିକାରୀ ହୋଇ ପାରିଛନ୍ତି । ତାଙ୍କ ପାଖରେ ଯେଉଁ ଛାତ୍ର-ଛାତ୍ରୀମାନେ ପଢିବାର ସୁଯୋଗ ପାଇଛନ୍ତି, ସେହିମାନେ ହିଁ ଏହି କଥାକୁ ହୃଦୟଙ୍ଗମ କରିପାରିବେ । ରସୋତ୍ତୀର୍ଣ୍ଣ ବାକ୍ୟଶକ୍ତି ଭାବରେ ଓ ସ୍ନେହପ୍ରବଣତାରେ ଆଦର୍ଶ ଶିକ୍ଷକ ଭାବରେ ସେ ସେ ପ୍ରତ୍ୟେକ ଛାତ୍ର ଛାତ୍ରୀମାନଙ୍କର ହୃଦୟରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିବେ, ଏକଥା କହିବା ବାହୁଲ୍ୟ ମାତ୍ର ।

ସେହି ମହାନ୍ ପଣ୍ଡିତ ଆଜି ଫୁଲ ପରି ମଉଳି ଝଡ଼ି ପଡ଼ିଥିଲେ ହେଁ, ଫୁଲର ସୁରଭି ପରି ସେ ସ୍ଥାୟୀ ହୋଇ ରହିବେ ।

# ସ୍ମୃତି-ତର୍ପଣ

ଅଧ୍ୟାପକ ଆନକନ୍ଦ ପଣ୍ଡା

●

ପଣ୍ଡିତ ନବକୃଷ୍ଣ ମିଶ୍ର ଉତ୍ତରାଧିକାର ସୂତ୍ରରେ ପାଣ୍ଡିତ୍ୟର ଅଧିକାରୀ ହୋଇଥିଲେ । ପିଲାଦିନରୁ ବୁଢ଼ାବାପାଙ୍କଠାରୁ ସଂସ୍କୃତଶିକ୍ଷା କରି ଜଣେ ବିଶିଷ୍ଟ ଶିଳ୍ପୀରୂପେ ପ୍ରତିଷ୍ଠିତ ହୋଇପାରିଥିଲେ । ଚିତ୍ରକଳାରେ ତାଙ୍କର କମ୍ ଦକ୍ଷତା ନଥିଲା ! ବାଙ୍କୀ ବୀରେନ୍ଦ୍ର କୃଷ୍ଣ ବିଦ୍ୟାପୀଠରେ ଅଧ୍ୟୟନ କରୁଥିବାବେଳେ ଶ୍ରେଣୀ ଗୃହରେ ଶିକ୍ଷକଙ୍କ ବକ୍ତବ୍ୟ ଶୁଣୁଥିବା ଅବସ୍ଥାରେ ଶିକ୍ଷକଙ୍କ ଶିକ୍ଷାଦାନକାଳୀନ ବିଭିନ୍ନ ଭଙ୍ଗୀର ଚିତ୍ର ସଙ୍ଗେ ସଙ୍ଗେ ଅଙ୍କନ କରି ପକାଉଥିଲେ ।

ଏକାଧାରରେ ପାଣ୍ଡିତ୍ୟ, ସହୃଦୟତା, ଉଦାର ଓ ସରଳତା ଆଦି ମହାନ୍ ଗୁଣର ସମାବେଶ ତାଙ୍କଠାରେ ହୋଇଥିଲା । ସ୍ନେହ ଶ୍ରଦ୍ଧା ପ୍ରଦର୍ଶନରେ ତାଙ୍କଠାରେ କାର୍ପଣ୍ୟ ନଥିଲା । ଗାଁ ଭୂଇଁର ଲୋକେ ବଡ଼ଡାକ୍ତରଖାନା କିମ୍ବା କୋର୍ଟକଚେରୀକୁ ଆସି ତାଙ୍କ ଘରକୁ ନିର୍ବିଘ୍ନରେ ପାନ୍ଥଶାଳା ରୂପେ ବ୍ୟବହାର କରି ପାରୁଥିଲେ । ରହିବା ଖାଇବା ସହ ସାମୟିକ ଯନ୍ତ୍ରାଖର୍ଚ୍ଚ ମଧ୍ୟ ପାଇ-ଯାଉଥିଲେ । ସେ ଖାଇ ଜାଣିଥିଲେ ଓ ଖୁଆଇ ଜାଣିଥିଲେ । ଉତ୍ତମ ଖାଦ୍ୟ ପ୍ରତି ତାଙ୍କର ଥିଲା ସ୍ୱତନ୍ତ୍ର ମୋହ । ପରପାଇଁ ନିଜେ ବନାପଢ଼ା ଘର କରେଇଛନ୍ତି, ମାତ୍ର ନିଜେଘରଖଣ୍ଡିଏ କରିପାରି ନାହାନ୍ତି । ସାନଭାଇର ଖର୍ଚ୍ଚ ପ୍ରତି ବଡ଼ଭାଇନାଭାଗିଦ୍ କରି ନାହାନ୍ତି; ବରଂ ଜମି ବିକି ଟଙ୍କା ପଠାଇଛନ୍ତି । ଭାଇ ଭାଇରେ କେବେ ବି ମନାନ୍ତର ହୋଇନି । ସେ ଥିଲେ ଛାତ୍ରବତ୍ସଳ । ଜାତି ଓ ଧର୍ମଗତ ସଂକୀର୍ଣ୍ଣତା ତାଙ୍କୁ ସ୍ପର୍ଶ କରିନଥିଲା । ଥରେ ଗାଁରୁ ଆସିବାବେଳେ ମୁଁ ଥିଲି ତାଙ୍କର ସହଯାତ୍ରୀ । ବାଟରେ ବୋହୂଟିଏ ବସ୍‌କୁ ଉଠିଲା । କାଖରେ ତାଙ୍କର ଦେଢ଼ବର୍ଷର କଅଁଳ ଶିଶୁଟିଏ । ବସ୍‌ରେ ବହୁତ ଭିଡ଼ । ଅଧ୍ୟାପକ ମିଶ୍ର ଚମକିଲା ପରି ତା ନାଁ ଧରି କୋଳକୁ ଟାଣି ଆଣିଲେ । ଗୋଟିଏ ପିତୃହୃଦୟର ପ୍ରାଣଖୋଲା ହସ ଉଚ୍ଛୁଳି ଉଠିଲା । ଯେମିତି ଗୋଟିଏ ବାପ ବହୁଦିନପରେ ତା ଝିଅ ଓ ନାତିକୁ ଦେଖୁଛି । ସାଙ୍ଗେ ସାଙ୍ଗେ ଶଶୁ, ନଣନ୍ଦ, ଜ୍ୱାଇଁ ସମ୍ପର୍କୀୟ ପ୍ରଶ୍ନ । ବୋହୂଟି ରେଭେନ୍‌ସାରେ ପଢୁଥିବାବେଳେ ତାଙ୍କ ଛାତ୍ରୀ ଥିଲା । ଏପରି ହୃଦୟବତ୍ତା ଓ ମମତାବୋଧ ପିତୃ-ପ୍ରତିମ ସେହି ଅନାବିଲ ଆତ୍ମା ପକ୍ଷରେ ହିଁ ସମ୍ଭବ ଥିଲା ।

●

# କବି ଜୟକୃଷ୍ଣ ସ୍ମରଣେ

ବୀରକିଶୋର ମହାନ୍ତି
ଷଷ୍ଠ ବର୍ଷ ଓଡ଼ିଆ



ନିଷ୍ଠାପର ସାରସ୍ୱତ ସାଧକ; ଦକ୍ଷ ସମାଲୋଚକ ସୁପାଣ୍ଡିତ୍ୟକ ଅଧ୍ୟାପକ ସ୍ୱର୍ଗତ ଜୟକୃଷ୍ଣ ମିଶ୍ର ଓଡ଼ିଆ ଜାତିପାଇଁ ହୋଇଥାନ୍ତି ଗର୍ବଗୌରବ । ଏପରି ଜଣେ ଯୋଗଜନ୍ମାଙ୍କୁ ହରାଇ ଓଡ଼ିଶାବାସୀ ଯେ କେବଳ ଜଣେ ସୁ ଅଧ୍ୟାପକଙ୍କୁ ହରାଇଲେ ତା ନୁହେଁ, ଏକାଧାରରେ ଜଣେ ପଣ୍ଡିତ, ବାଗ୍ମୀ ଓ କବିଙ୍କୁ ହରାଇ ବସିଲେ । ଆଜିବି ମନେପଡେ ସେଇ ହସ ହସ ମୁହଁ, ନିରାଡମ୍ବର ସ୍ନେହବାଣୀ; ଶିଶୁସୁଲଭ ସରଳ ମାଧୁର୍ଯ୍ୟ, ସିଏ କି ନିଜେ ହସି ଅନ୍ୟକୁ ହସାଉଥିଲେ । ସେହି ଯାଦୁକରୀ ନିଷ୍ପାପ ବ୍ୟକ୍ତିତ୍ୱର ଅନ୍ତରରେ କ'ଣ ଥିଲା କେଜାଣି ଶ୍ରେଣୀ ପ୍ରକୋଷ୍ଠରେ ଅଧ୍ୟାପନା କଲାବେଳେ ପିଲାମାନେ ତାଙ୍କପ୍ରତି ଓଟାରି ହୋଇଯାଉଥିଲେ ।

ଜୟକୃଷ୍ଣ ପ୍ରତିଭାର ନିଜସ୍ୱ ରୂପ ତାଙ୍କର କାବ୍ୟକବିତାରେ ଉତ୍କୀର୍ଣ୍ଣ । ନିରଳସ ସାଧନା ଏବଂ ଆପଣାର କବିମାନସରେ ସେ ଯେଉଁ କାବ୍ୟକବିତାର କନକକଣିଶ ଉତ୍ପାଦନ କରିଯାଇଛନ୍ତି ତାହା କାଳର ଗର୍ଭାଗାରରେ ଗୋଟିଏ ଗୋଟିଏ ଅମୂଲ୍ୟ ସମ୍ପଦ । ରାଧାନାଥ କାବ୍ୟ ଶୈଳୀକୁ ଯେ ବହୁମାତ୍ରାରେ ତାଙ୍କ କାବ୍ୟକବିତାରେ ଗ୍ରହଣ କରିଛନ୍ତି ।

"ମାଲ୍ୟଗିରି", "ଅଂଶୁପ୍ରା", "ଚନ୍ଦ୍ରିକା" ଏବଂ "ସିଂହନାଥ"କୁ କବିଙ୍କର ନିରଳସ ସାଧନାର ପରିଚୟ ମିଳିବା ସଙ୍ଗେ ସଙ୍ଗେ କବିତ୍ୱ ଶକ୍ତିର ଅଫୁରନ୍ତ ନିର୍ଯ୍ୟାସ ଏହି କବିତାଗୁଡ଼ିକରେ ଉତ୍କୀର୍ଣ୍ଣ । ପ୍ରକୃତିପ୍ରାଣତା ଏହି କବିତାର ପ୍ରାଣସ୍ରୋତ । "କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ସମୀକ୍ଷା" ଓ "ମନ୍ତ୍ରକା ମଣିମାଳିନୀ" କାବ୍ୟ ଓଡ଼ିଆ ସାହିତ୍ୟର କୋଠଭଣ୍ଡାରରେ ଦୁଇଟି ମଣିତୁଲ୍ୟ । ଦୀର୍ଘ ଅଧ୍ୟବସାୟର ଫଳ ଏବଂ ଦାର୍ଶନିକ ସଙ୍କେତ ତାଙ୍କର ଅପ୍ରକାଶିତ ସଂସ୍କୃତ ମହାକାବ୍ୟ 'ମାତୃମୁକ୍ତ ମୁକ୍ତାବଳୀ'ରେ ସୂଚିତ ।

ବାସ୍ତବରେ କବି ଜୟକୃଷ୍ଣଙ୍କ ଜୀବନ ବିଭିନ୍ନ ଅନୁଭବ ଓ ଅନୁଭୂତିରେ ଗଢ଼ା । ଜୀବନ ସମ୍ପର୍କିତ ଦୃଷ୍ଟିଭଙ୍ଗୀ ତାଙ୍କର ଥିଲା ଭିନ୍ନ । ଏହିପରି ଜଣେ ଯୋଗଜନ୍ମା ସଂସ୍କୃତର ବରପୁତ୍ର ପ୍ରବୀଣ ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କୁ ଏକାନ୍ତ ହରାଇ ଚିରଦିନ ପାଇଁ ଆଖିରୁ ଲୋତକ ପୋଛୁଥିବ । ଜୟକୃଷ୍ଣ ମିଶ୍ରଙ୍କ ବ୍ୟକ୍ତିତ୍ୱ ଓଡ଼ିଶାବାସୀଙ୍କ ପକ୍ଷେ ଚିରଦିନ ପାଇଁ ପାଥେୟ ହୋଇ ରହିବ ।



# ଜୟ ଜୟ ଜୟଜୟନ୍ତୁ JOY ନକେତନ

ଅଧ୍ୟାପକ ବେଣୁଧର ରାଉତ

୧୯୪୮-୪୯ ସାଲ । ଆମେ ପଢ଼ୁଥାଉଁ ଓଡ଼ିଆ ସ୍ନାତକୋତ୍ତର କ୍ଲାସରେ ପର୍ବରେ । ସେତେବେଳେ, ଓ ଏମ୍ ପି ଠକ ପାଖର ପ୍ରାକୃତିକ ପରିବେଶମୟ ବିସ୍ତୀର୍ଣ୍ଣ ଓ ନିର୍ଜନ ଆୟତନ ମଧ୍ୟରେଥିଲା ମୟୂରଭଞ୍ଜ ହାଉସ୍,ତାହା ପ୍ରଥମକରିହେଲା ପି. ଜି. ହଷ୍ଟେଲ୍ । ଆମେମାନେ; ଆଉନ୍ ଟ୍ରୁକ୍ତଙ୍କ ସମେତ ହେଲୁଁ ପ୍ରଥମ ଅନ୍ତେବାସୀ । ଅଧ୍ୟାପକ ଜୟକୃଷ୍ଣ ମିଶ୍ର ହେଲେ ତତ୍ତ୍ୱାବଧାରକ । ତାଙ୍କ ଭାଷାରେ ସୁପ୍ରିଟେଣ୍ଡ । କଲେଜ ପଢ଼ା ସାରି, ଅନେକ ସମୟରେ ତାଙ୍କ ସହିତ ଆମେ କେତେଜଣ ବନ୍ଧୁ ଫେରୁଥିଲୁଁ —(ଏବେ ଷ୍ଟୁଆର୍ଟ କଲେଜର ମୁଖ୍ୟ ଓଡ଼ିଆ ଅଧ୍ୟାପକ) ରଘୁନନ୍ଦନ ଦାସ ଭାଇ, ମୁଁ ଏବଂ ଆଉ କେହି କେହି । ସେ ଫେରନ୍ତି ତାଙ୍କ କ୍ୱାର୍ଟର୍ସକୁ, ଆମେ ହଷ୍ଟେଲକୁ । ଥରକର ଘଟଣା । ଶୀତ କାଳ । ଜାନୁଆରି ମାସ କି ଜଣ । ରେଭେନ୍ସା କଲେଜର ଛ- ନମ୍ବର ପ୍ରକୋଷ୍ଠ, ଏ ହେଉଛି ଓଡ଼ିଆ ଏମ୍.ଏ. କ୍ଲାସପାଇଁ ନିର୍ଦ୍ଦିଷ୍ଟ । ଏହାର ସାମ୍ନା ବାରଣ୍ଡାରେ, କ୍ଲାସ ସାରି, ଆମେ ରହିଥାଉଁ,—ଏକାଠି ହୋଇ ଫେରିବାର ପ୍ରସ୍ତୁତି । ହଠାତ୍ ଦେଖିଲୁଁ (ବର୍ତ୍ତମାନର ମନସ୍ତତ୍ତ୍ୱ ବିଭାଗ ସାମ୍ନା) ଫାଟକ ଅନ୍ତୁ ତିନି ଜଣ ସାନ ପିଲା ଆସୁଛନ୍ତି, ସମସ୍ତେ ପ୍ରାୟ ଧୂଳିଧୂସର । ସାର୍ କହିଲେ, 'ଦେଖରେ, ମୋ ବାଟାଲିଆନ୍..' । ବୋଧହୁଏ ଦାସ ଭାଇ କହିଲେ, 'ଏମିତ ସିଧା ସଳଖ କହିଦେଲେ ଚଳିବ ନାହିଁ । ଗୋଟାଏ କିଛି ଆଳଙ୍କାରିକ ଆଶୁକବିତାରେ କହନ୍ତୁ ।' କିଛି କ୍ଷଣ ଜଗିବାରୁ ଚୁପ୍ ରହିଗଲେ । ପିଲାଏ ପାଖ ହୋଇଯିବାରୁ ତାଙ୍କର ସ୍ୱଭାବଲଳିତ ହସ ହସ ମୁହଁରେ, ବାଁ ହାତର ଭଙ୍ଗୀରେ, ଗାଇଲେ— 'ଆରେ ମୋବାପ ହରୁପି, ପଦ୍ମ ବ୍ରଜରେ/ଆସିଲ କି ଏତେ ପଥ ପଦବ୍ରଜରେ ।'ସ୍ୱର କୌତୁକ ଲାଗିଲା । ଗୀତ ପଦକ ରୁଏଁ ରୁଏଁ ମୁଖସ୍ଥ ରହିଗଲା । ପୁଣି କିଛି ସମୟ ପରେ କହିଲେ । 'ପାଠାନ୍ତରଟା ରହିଗଲାରେ ।' ଆମେ କହିଲୁଁ, ଆଜ୍ଞାବାବୁଙ୍କର ତ ବହୁତ ପାଠାନ୍ତର । ଆପଣଙ୍କ ଗୋଟାକ ଚଳୁ । ସେ ପୁଣି ଗାଇଲେ, 'ଆରେ ମୋ ବାପ ହରୁପି, ପଦ, ବ୍ରଜରେ/ଆସିଲ କି ଘରୁ ରୁଷି ପଦ ବ୍ରଜରେ ?'' ଏଇ ପାଠ ନିଶ୍ଚେଁ 'କ' ପୋଥିରୁ । ବାଃ × × ×

ଏହାହିଁ ସେ ମହାନ 'ଆତ୍ମାର ହୃଦସ୍ଥ-ବିଜୟୀ ଆହ୍ଲାଦର ରୂପଚିତ୍ର ।




## ସବସେନା ସେନାନାଥ

ଡଃ ସଚ୍ଚିଦାନନ୍ଦ ମହାନ୍ତି

"ହେ ଧୂମପ (ଧୂମପାନକାରୀ, ଯଥା—ମଧୁପ)ତି ଚରତ ଇତ ଚିତରଃ-" ଆ ନ ନିଷେଧ । ମୋଟର ବସରେ ଲେଖାଥିବା ଧୂମପାନ ନିଷେଧର ଅର୍ଥାନ୍ତରୀ-କରଣ) ଏହିପରି ପାଣ୍ଡିତ୍ୟପୂର୍ଣ୍ଣ ଚତୁରୋକ୍ତି ତଥା ଲଘୁହାସରେ ବାୟୁମଣ୍ଡଳକୁ ଭରପୂର କରୁଥିବା 'ଜର୍ଦ୍ଦାବାବୁ' 'ଜଇ ସାଇନା' ଓରଫ୍ ଅଧ୍ୟାପକ ଜନ୍ମକୃଷ୍ଣ ମିଶ୍ର' ଶେଷଥରପାଇଁ ନିଦ୍ରା ଯାଇଛନ୍ତି । ଆଉ ଏ ନିଦ ଭାଙ୍ଗିବାର ନୁହେଁ । 'ମଞ୍ଜୁଳା'ର କବି ଓ ଆଲୋଚକ ରୂପରେ ସେ ସୁଖ୍ୟାତି ଅର୍ଜନ କରିଥିଲେ । ତାଙ୍କରି ଭାଷାରେ ତାଙ୍କର ପ୍ରିୟ ଦ୍ରବ୍ୟ ଥିଲା 'ଗୁବୁକ୍' (ଗୁ ଓ ବନ୍ଧ) ।

ସଦା ହସହସ, ପ୍ରିୟଭାଷୀ, କୁଶଳ ଜାଳାପୀ, ବିଦଗ୍ଧ ମନୋହାସ୍ୟ ଅଧ୍ୟାପକ ମିଶ୍ର ଥିଲେ ଅଜାତଶତ୍ରୁ । ସଦବସ୍ତୁଳ ଏଇ ସେନାନାଥଙ୍କୁ ଦେଖିଲେ ମନର ବେଦନା କେବଳ ଦୂରେଇ ଯାଏନାହିଁ- ଅଫୁରନ୍ତ ପ୍ରେରଣାରେ ସତେଜ ହୋଇଉଠେ । ତାଙ୍କର M. A. DEd ଯୋଗ୍ୟତା ବିଦଗ୍ଧ ପଣ୍ଡିତ ସ୍ୱର୍ଗତ ବାନାମ୍ବର ଆଚାର୍ଯ୍ୟଙ୍କ ରସିକତାପୂର୍ଣ୍ଣ ଉକ୍ତି Maded ଭିତରେ ପରିଶ୍ରୁତ ।

'ମଞ୍ଜୁମୁକ୍ତା ମୁକ୍ତାବଳୀର ଛନ୍ଦେ ଛନ୍ଦେ 'ଶୋଭାର ଆଗମନୀ ବାର୍ତ୍ତା ଭରଣୀ ଭବଭୂତି ଓ କାଳିଦାସଙ୍କ ପରମ୍ପରାର ସ୍ମରଣ କରାଇଦିଏ । ଉତ୍କଳର ସୁବିଖ୍ୟାତ ସଂସ୍କୃତ କବି ଓ ପଣ୍ଡିତ ବକୁଳ ସ୍ୱର୍ଗତ ବଡ଼ପଣ୍ଡାଙ୍କର ଉପଯୁକ୍ତ ଦାୟାଦ ବୋଲି ପରିଚିତ କରାଏ । 'ମଞ୍ଜୁଳାମଣିମାଳିନୀ' ଜନ୍ମକୃଷ୍ଣଙ୍କ ଯୌବନର ସଙ୍ଗୀତ । 'ପଢ଼ା ମଝିରେ ମଝିରେ ସୌଭାଗ୍ୟକ୍ରମେ ଯେ କେତୋଟି ମାତ୍ର ରମଣୀୟ ସ୍ଥାନ ଅଳ୍ପ ସମୟପାଇଁ ବୁଲି ଆସିଥିଲି ସେଇଗୁଡ଼ିକ ହିଁ ମୋ ଦୀନ ଲେଖନୀର ସମ୍ବଳ ଓ ମଣିମାଳିନୀ'ର କେତୋଟି ମାତ୍ର ମଣି । ମଣିମାଳିନୀ ଜନ୍ମଭୂମିକ ଭାଷାରେ ସଜାଇବା ମୋ ଭଳି ନଗଣ୍ୟ ପକ୍ଷରେ ଏକାନ୍ତ ଅସମ୍ଭବ ଓ ଉପହାସର ବିଷୟ । ସେହି ମଣିନିଚୟର ବାସ୍ତବ ଉତ୍କର୍ଷ ଉପଲବ୍ଧି କରି ଆହରଣ କରିବା ଶକ୍ତି ମୋର ଆସିବ ବା କେଉଁଠୁ ? ଯେଉଁ ରୂପରେ ଗ୍ରହଣ କରିଛି ତାହା କାହାଠାରୁ ମଧ୍ୟ ଅସଂଖ୍ୟ ପାହାଚ ତଳେ । ଅଧିକ କେବଳ ଜକଜକିଆ ଦିଶିବାରୁ ଗୋଟେଇ

ପକେଇ ସେଗୁଡ଼ିକୁ ଠୁଳ କରୁ କରୁ ବାନ୍ଧିକ   ସେ ତାହା ଟୁଏଁ ଟୁଏଁ ଗୋଟିଏ ମାଳ ହୋଇଗଲା ସେକଥା   ଜାଣିବାକୁ କମ୍ବା ସେଗୁଡ଼ିକର ଉତ୍କର୍ଷ ଅପକର୍ଷ ବିବେଚନା କରିବାକୁ ମୁଁ ଏକାନ୍ତ ଅକ୍ଷମ ।'' ମଣିମାଳିନୀ ଜନ୍ମଭୂମିର ସିଂହନାଥ (ବଡ଼ମ୍ବା), ଅଂଶୁପା, (ଅଠଗଡ଼), ସପ୍ତଶଯ୍ୟା (ଢେଙ୍କାନାଳ), ଚର୍ଚ୍ଚିକା (ବାଙ୍କି), କପିଳାସ (ଢେଙ୍କାନାଳ) ମଲ୍ଲଗିରି (ଢେଙ୍କାନାଳ), ସୁବର୍ଣ୍ଣମେରୁ (ସୋନପୁର) —ବଲାଙ୍ଗୀର), ମନ୍ଦାରମା (ସମଗ୍ର ଉତ୍କଳଭୂମି) ଏକଏକ ମଣି ସଦୃଶ । ପ୍ରକୃତ-ଗଣୀ ଚିରସ୍ନୋଗମୟୀ । ତା'ର   କୋଳରେ   ଲାଳିତ ପାଳିତ ହୋଇ ବାସ୍ତବରେ କାଠ ବୋହୁ ଥିବା ଖବରଟି   ଝାଳନାଳ ହୋଇ ସେ କପରି   ଧାଇଁଛି । କପଟତାହୀନ ନୀରସ ଜୀବନ   ତାର । ନବୀନ   ହେଲେବି ସ୍ୱଳ୍ପରେ ଢାଳନ୍ତାଟି । ଶିକ୍ଷାର ଆଲୋକ ସେ ଦେଖିନି,   ସଭ୍ୟତାର ମୋହ ତାକୁ ଘାରିନି ।   ସଭ୍ୟତା ପାଖରେ ମଣ୍ଡି ତାର ଦ୍ରୁତି କୁଣ୍ଠିତ ହୋଇନ । ମିଥ୍ୟା, ଶଠତା, ପତାରଣାର   ସେ ଶିକାର ନୁହେଁ । ସେଇ ଜୀବନକୁ   କବି   ପଦେ କରିଛନ୍ତି । ସୁଖ ଆଶାରେ ଅଜଗ ମନୁଷ୍ୟ କପରି ଭ୍ରାନ୍ତ—ସଭ୍ୟତା   ନାମରେ ପଦ୍ମସ୍ଥିର   ମଧ୍ୟରେ ବିଷମ   ବୈରିତ, ଭାଇ ଭାଇ ଗଳାରେ ଶାଣ   ଛୁରିରେ ପରଖ କରିବାର   କାରଣ ସେ ଆଧୁନିକ କଗଲ ସଭ୍ୟତାର ତରଳ ଗରସ ମଧ୍ୟରେ ହିଁ ଦେଖିଛନ୍ତି ।। ଏ ସଭ୍ୟତା ସରଳ ପଲ୍ଲୀ ଜୀବନକୁ ବାରମ୍ବାର କଳୁଷିତ   କରେ   ।   ସରଳ   ସ୍ୱାଧୀନ   ଜୀବନରେ   ଜଳାଞ୍ଜଳି ଦେଇ ନାଲି କୃତ୍ରିମରେ ଦାସ   ହେବା   ଆଧୁନିକ କାଳରେ ଗର୍ବ ଓ ଗୌରବର ବିଷୟ ହୋଇ ପଡ଼ିଛି । କେତେ ଗିରିଦୁର୍ଗ, କେତେଦେବାଳୟ, କେତେ ଜନଶ୍ରୁତି କେତେ କମ୍ବଦନ୍ତୀ, ସେସବୁକୁ   ଲେଖନୀ ମୁନରେ   ରୂପାୟିତ କରି କବି ଆଜି ,ଅମର । (ବୃହଦ୍ ଅମ୍ବା   ବଡ଼ମ୍ବାର   ଦେବୀ ଭଟ୍ଟାରିକା)   ଗିରିଶାର   ଅଧିଷ୍ଠାତ୍ରୀ ଦୁର୍ଗାଦେବୀ ମହାନଦୀର ପରପାରକୁ   ଯିବାକୁ ଇଚ୍ଛାକରି ଅଇଁଲା   ଫୁଲର   ମାଳା ଗଳାରେ ଦେଇ ନଦୀ ପାର ହେବାକୁ ଯିବା ଏବଂ କୈବର୍ତ୍ତ   ତାଙ୍କୁ   ଚିହ୍ନି ନ ପାରି ସାଧାରଣ ସ୍ତ୍ରୀଲୋକ   ଜ୍ଞାନରେ   ମନାକରିଦେବା   ପରେ   ଦେବୀଙ୍କ   ଅଦୃଶ୍ୟ ହେବା ଓ ଅଇଁଲା ଫୁଲର   ମାଳା ରୂପରେ ଭାସି ଭାସି   ଅରପଟେ   ଲାଗିବା, ବାଙ୍କି ଲୋକଙ୍କୁ ସ୍ୱପ୍ନହେବା ଓ ସବୁରିଦ୍ୱାରା ଅର୍ଚ୍ଚିତା ହୋଇ ଚର୍ଚ୍ଚିକା   ନାମରେ ପୂଜା ପାଇବା କମ୍ବଦନ୍ତୀକୁ ଅମର କରି ଯାଇଛନ୍ତି ।

୧୯୪୦ ମସିହାରେ   ପ୍ରକାଶିତ   ଏହି 'ମଞ୍ଜୁଳା ମଣିମାଳିନୀ'ର   କବିଙ୍କ ପ୍ରଶଂସା ଛଳରେ   ଅଧ୍ୟାପକ   ଅର୍ତ୍ତବଲ୍ଲଭ ଲେଖିଛନ୍ତି—''ତରୁଣ କବି ଉଚ୍ଚର ସରଳ, ସହଜ ଚିତ୍ତାକର୍ଷକ ଓ   ଜନସାଧାରଣ ବୋଧ   ଭାଷାରେ ସଙ୍ଗତ ଉତ୍କଳ

ଜନନୀର ଗତ ଗୌରବ ତଥା ଐତିହାସିକ କିମ୍ବଦନ୍ତୀକୁ ଜୀବନ୍ତ କରି ଉତ୍କଳର ଦେଶୀୟ ପ୍ରାଣବନ୍ତ ଜାଗରଣ ସ୍ୱରୂପ ଜନସମକ୍ଷରେ ଉପସ୍ଥାପନ କରିଅଛନ୍ତି । ସମସ୍ତ କାବ୍ୟରେ ପ୍ରାକୃତିକ ବର୍ଣ୍ଣନାଗୁଡ଼ିକ ଜୀବନ୍ତ ଓ ହୃଦୟସ୍ପର୍ଶୀ ହୋଇ 'ମଞ୍ଜୁଳା'କୁ ପ୍ରକୃତରେ ମଞ୍ଜୁଳା କରିଅଛି ।"

ଜୀବନରେ ଘାତ ପ୍ରତିଘାତରେ ସେ ଭାଙ୍ଗି ଯାଇନାହାନ୍ତି । ମରଣକୁ ବାରମ୍ବାର ତାଚ୍ଛଲ୍ୟକରି ମାତୃମୁକ୍ତିର ସଙ୍ଗୀତ ଗାନରେ ଉନ୍ମତ୍ତ ହୋଇଛନ୍ତି । ଶମନ ଭୁବନରୁ ନିମନ୍ତ୍ରଣ ସ୍ୱରୂପ ସମନ ସେ ପାଇଥିଲେ । ସେଥିପାଇଁ ସଜାଗ ହୋଇଥିଲେ ମଧ୍ୟ । ତଥାପି ସେ ଖେଳାନାଥଟି ବାଣୀ ଅର୍ଚ୍ଚନାରେ ଖେଳି ହୋଇ ସେ କଥା ଭୁଲି ଯାଉଥିଲେ । ଭଗବାନ କୃଷ୍ଣଙ୍କ ଚରଣତଳେ ମାଗୁଣି ଜୟକୃଷ୍ଣଙ୍କୁ ଆପଣା କୋଳରେ ସ୍ଥାନ ଦେଇ ନିତ୍ୟପଦରେ ରଖନ୍ତୁ ।



## ଜୟକୃଷ୍ଣ ମିଶ୍ରଙ୍କ ସୃଷ୍ଟି-ଚେତନା

ଅଧ୍ୟାପକ ବୈଷ୍ଣବ ଚରଣ ସାମଲ



ଜୟକୃଷ୍ଣ ମିଶ୍ର ବଳେ ଜଣେ ଅଧ୍ୟାପକ ଭାବରେ ଓଡ଼ିଶାରେ ସୁପରିଚିତ ନଥିଲେ, ମାତ୍ର ଜଣେ ବହୁପାଠୀ ବ୍ୟକ୍ତି ଓ ରସସିଦ୍ଧ କବି ଓ ଭାବୁକ ଭାବରେ ଥିଲେ ସୁପ୍ରତିଷ୍ଠିତ । ଦୀର୍ଘ କର୍ମବହୁଳ ଜୀବନରେ ସେ ଅଧ୍ୟାପନାକୁ ବୃତ୍ତି କରି ନେଇଥିଲେହେଁ କାବ୍ୟ-କବିତା-ବିନୋଦନରେ ସେ ଜୀବନକୁ ସତତ ଆନନ୍ଦମୟ କରି ରଖୁଥିଲେ । ଅଧ୍ୟାପନା ବେଳେ ସେ ଯେପରି ଭାବ-ତନ୍ମୟ, ସଭା ସମିତିରେ ଅନର୍ଗଳ ଭାଷଣ ଦେଲାବେଳେ ମଧ୍ୟ ସେ ସେହିପରି ରସ-ସ୍ୱଚ୍ଛଳ । ଜଣେ ସରଳ ଅମାୟିକ ନିଷ୍କପଟ ବ୍ୟକ୍ତି ଭାବରେ ସେ ଯେପରି ଥିଲେ ସମସ୍ତଙ୍କ ନିକଟରେ ଆଦରଣୀୟ ସେହିପରି ଜଣେ ସମ୍ବେଦଶୀଳ ରସଗ୍ରାହୀ କବି ଭାବରେ ମଧ୍ୟ ଥିଲେ ସମସ୍ତଙ୍କର ଆପଣାର । ସେ ଥିଲେ ପୂର୍ଣ୍ଣତଃ କବିପ୍ରାଣ । କବିତାର ଛନ୍ଦେ ଛନ୍ଦେ

ସେ ଜୀବନକୁ ଉପଭୋଗ କରୁଥିଲେ । ସଙ୍ଗୀତର ତାଲେ ତାଲେ ସେ ନାଚି ଉଠୁଥିଲେ ଭାବବିହ୍ୱଳ ହୋଇ । ଜୀବନରେ ତାଙ୍କର ଅନନ୍ତ ଦୁଃଖ, ମାତ୍ର ନୀଳକଣ୍ଠପରି ସେ ସକଳ ଦୁଃଖ-ସକଳ ଗ୍ଲାନିକୁ ପାନ କରି ଅମୃତର ବାଣୀ ଶୁଣାଇ ଅଛନ୍ତି । ଅନେକ କ୍ଷୁଦ୍ର କବିତା ରଚନା କରି ସେ ହୃଦୟର ସ୍ୱାଭାବିକ ରସବୋଧ ଓ ମାନବ ପ୍ରୀତିକୁ ପ୍ରକାଶ କରିଅଛନ୍ତି । ତାଙ୍କ କାବ୍ୟକବିତାର ମୁଖ୍ୟସ୍ୱର—ପ୍ରକୃତିପ୍ରାଣତା ଓ ସୌନ୍ଦର୍ଯ୍ୟ ଅବବୋଧ, ପ୍ରୀତି-ମୈତ୍ରୀ ଓ ମାନବିକତାର ମୁଗ୍‌ଧ ବନ୍ଦନା— ଦୈନ-ଅଭାବ-ଅନଟନ ମଧ୍ୟରେ ବିଶ୍ୱପ୍ରେମ ପ୍ରତି ଗଭୀର ଆସକ୍ତି ଓ ସର୍ବୋପରି ମଣିଷକୁ ଭଲ ପାଇବାର ଦୁର୍ବାର ମୋହ । ପ୍ରକୃତି ଭିତରେ ସେ ଖୋଜୁଛନ୍ତି ମଣିଷର ମୁଗ୍‌ଧ ରୂପକୁ—ଖୋଜୁଛନ୍ତି ଆତ୍ମାର ଶାଶ୍ୱତ, ଆନନ୍ଦକୁ । 'ସପ୍ତଶଯ୍ୟାର ପ୍ରକୃତି' ମଧ୍ୟ ଦେଇ 'ଐତିହାସିକ ଅଂଶୁମା' ପର୍ଯ୍ୟନ୍ତ, ମଞ୍ଜୁଳା ମଣି ମାଳିନୀ' ଠାରୁ ଆରମ୍ଭ କରି ସଂସ୍କୃତ "ମାତୃମୁକ୍ତ ମୁକ୍ତାବଳୀ' ପର୍ଯ୍ୟନ୍ତ ସର୍ବତ୍ର କବିଚିତ୍ତର ଏହି ଭାବକୁ ଦେଖିବାକୁ ମିଳିଥାଏ । ଏପରିକି ଜଗନ୍ନାଥ ଜଣାଣ ଭିତରେ ମଧ୍ୟ ସେ ବିଶ୍ୱବୋଧ ଦେଇ ଆତ୍ମାର ଆନନ୍ଦ ଭାବକୁ ଅନ୍ୱେଷଣ କରିଅଛନ୍ତି । କବି ଜୟକୃଷ୍ଣଙ୍କର ଅନ୍ତର ଶତଦଳ ପରି ଶୁଭ୍ର ଓ ସୁନ୍ଦର । ଆକାଶ ପରି ଅନନ୍ତ । ବାରିଧି ପରି ଅତଳ । ଦିବ୍ୟ ରସରେ ତାଙ୍କର କାବ୍ୟରସ ରସାଣିତ । କବି ଜୟକୃଷ୍ଣଙ୍କର ଅନ୍ତରର ବାଣୀହିଁ 'କବି ସଂସାରର' କବିତାରେ ପ୍ରମୂର୍ତ୍ତ । କବିର ଲେଖନୀରେ 'ସାହାରା ଶିହରି ହସେ' । କବି ହସିଲେ କର୍କଶ ଭୂମିରେ 'କୋଟିଏ ସୁଷମା ଝରେ' । ସବୁ ଦୁଃଖ ଯନ୍ତ୍ରଣାକୁ କବି ଜୀବନର ସାଥୀ କରିନିଏ । ତାପରେ ସେ ଗାଏ ଜୀବନର ସାମ-ସଂଗୀତ । 'କବିର ସଂସାର' କବି ଜୟକୃଷ୍ଣଙ୍କର ଅନ୍ତରର ଅଭିବ୍ୟକ୍ତି—ଜୀବନର ଗାଥା । ସେହି କବି କାନ୍ଦିଲେ, କାନ୍ଦି ଉଠେ ବିଶ୍ୱ ପ୍ରାଣ—ତରଳିଯାଏ ପଥର—ଚହଲିଯାଏ ବୃକ୍ଷର ପତ୍ର । ସେ ପୁଣି କଳ୍ପନା ରଥରେ ଆରୋହଣ କରି ବିଶ୍ୱପରିକ୍ରମା କରେ—ଗ୍ରହ ଗ୍ରହାନ୍ତର ଯାତ୍ରାକରେ—ଅଦିବ୍ୟରୁ ଦିବ୍ୟନ୍ତରକୁ ଯାଏ । ସମ୍ପତ୍ତି ତାର 'କଳ୍ପନା ଧନ' । ସେ ମଉପାଗଳ । ସେ ପ୍ରକୃତିର ଚିତ୍ରକର । ତାର ସାଥୀ "ଉଆଁସ ଜୋଛନା ଘଡ଼ି, ଶ୍ରାବଣ ବାଦଲ, ଶୁଭ୍ର ଭାଦର" । ଏହି କାବ୍ୟ-ମାନସର ପରିଚୟ ତାଙ୍କର ସମସ୍ତ କ୍ଷୁଦ୍ର କବିତା ତଥା ଦୀର୍ଘ କବିତା ଓ କାବ୍ୟ ମହାକାବ୍ୟରୁ ଦେଖିବାକୁ ମିଳେ । ପ୍ରକୃତିର ସୌନ୍ଦର୍ଯ୍ୟରେ ଅବଗାହନ କରି କବିପ୍ରାଣ, ବିଶ୍ୱପ୍ରେମରେ ଉଦ୍‌ବୁଦ୍ଧ ହୋଇ ଉଠିଛି । ଐତିହାସିକ ଅଂଶୁପାରି' ଶ୍ରୀ ଓ ସମ୍ପଦ ବର୍ଣ୍ଣନା କରୁ କରୁ କବି ଜାତୀୟଚେତନାରେ ଉଦ୍‌ବୁଦ୍ଧ ହୋଇ ଉଠିଛନ୍ତି ଓ ସେହି ଜାତୀୟ ପ୍ରାଣସ୍ପନ୍ଦନ ମଧ୍ୟ ଦେଇ ବିଶ୍ୱ ପ୍ରେମର ଉଦ୍‌ଗାତା ହୋଇଛନ୍ତି ।

କବିବର ରାଧାନାଥ ରାୟଙ୍କର 'ଚିଲିକା' ଅନୁସରଣରେ କବି ଚନ୍ଦ୍ରକାନ୍ତ 'ଅଂଶୁପା' ଖଣ୍ଡକାବ୍ୟ ରଚନା କରିଥିଲେହେଁ ଏଥିରେ ସେ ମୌଳିକତାର ପରିଚୟ ଦେଇଅଛନ୍ତି । ରାଧାନାଥ ଚିଲିକା କାବ୍ୟରେ ଉଲ୍ଲେଖ କରିଥିଲେ— "ସ୍ୱରୂପା ଅଂଶୁପା ଲୋକେ ଅଗୋଚର ।" ଏଥିପାଇଁ ବୋଧହୁଏ କବି ଚନ୍ଦ୍ରକାନ୍ତ ଅଂଶୁପାକୁ ଲୋକେ ସମାଜରେ ଗୋଚର କରାଇବାପାଇଁ 'ଅଂଶୁପା' କାବ୍ୟ ଲେଖିଥିଲେ । ଅଂଶୁପା ଆଜି ନୀରବ—ନୀରବ ତାର କଳ ଧ୍ୱନି—ନୀରବ ତାର ତୀରଭୂମି । ତଥାପି ସେହି ମହାନୀରବତା ସମ୍ଭୃତ ପାରାବାରର ବିକଟ ରବ ସମାନ ନୁହେଁ । ସେହି ନୀରବତା ଯେପରି କବିଙ୍କୁ ପ୍ରେମ ଆମନ୍ତ୍ରଣ କରୁଛି ଏବଂ ସେହି ନୀରବତା ଅନ୍ତରାଳ ମଧ୍ୟରେ କବି ଅନନ୍ତ ବିଶ୍ୱପ୍ରେମର ପରିଚୟ ପାଇଅଛନ୍ତି । ପ୍ରକୃତି ପ୍ରୀତି-ଜାତୀୟତା-ସୌନ୍ଦର୍ଯ୍ୟ ଅବବୋଧ-ସତ୍ୟ-ଅହିଂସା-ମୈତ୍ରୀର ବର୍ଣ୍ଣନା ଥିଲେହେଁ ସବୁଠିପରି କବିଚିତ୍ତର ଏହି ବିଶ୍ୱ ପ୍ରେମାନୁଭବ ମୁଖ୍ୟ ହୋଇ ଉଠିଛି । ସେ ଥିଲେ ସମ୍ବେଦନଶୀଳ ବ୍ୟକ୍ତି ଓ ସେହି ସମ୍ବେଦନା ହିଁ ହେଲା ତାଙ୍କ କବିତାର ପ୍ରାଣ । ବାପୁଜୀଙ୍କ ତିରୋଧାନରେ ତାଙ୍କର କାବ୍ୟପୁଷ୍ପ ବାପୁଜୀଙ୍କର ବ୍ୟକ୍ତିତ୍ୱର ମୁଗ୍ଧ ବନ୍ଦନା କରିବା ସଙ୍ଗେ ସଙ୍ଗେ ସେହି ବିଶ୍ୱ ପ୍ରେମ ଓ ଅନନ୍ତ ଶାନ୍ତିର ସୂଚନା ଦେଉଅଛନ୍ତି "ବିଶ୍ୱ ଜୀବନ ଦେବେ" କବିତାରେ ।

ବାପୁଜୀଙ୍କର ବ୍ୟକ୍ତିତ୍ୱର ପରିଚୟ ଅଛି ଏବଂ ତା ସହିତ ଅଛି କବିଚିତ୍ତର ଶାଶ୍ୱତ ଶାନ୍ତି ଓ ଆନନ୍ଦପାଇଁ ଦୁର୍ବାର ମୋହ । ସମସ୍ତ କବିତା ଭିତରେ କବି ମାନବିକତାର ମୁଗ୍ଧ ବନ୍ଦନା କରିବା ସଙ୍ଗେ ସଙ୍ଗେ ଶାନ୍ତି, ପ୍ରେମ, ମୈତ୍ରୀ ଓ କର୍ତ୍ତବ୍ୟବୋଧର ସଙ୍କେତ ଦେଇଅଛନ୍ତି । ମଣିଷ ତାର ଅନ୍ତରରୁ ସକଳ ଅହଂ ଓ ଅହଂକାରକୁ ତ୍ୟାଗକରି କୋଟିଜନତାର ମଙ୍ଗଳପାଇଁ ଆଗେଇ ଆସିଲେ ବିଶ୍ୱଜୀବନ ସହିତ ସେ ଏକାତ୍ମ ହୋଇଯିବ । ଏ ଜଗତ ହିଂସ୍ରମୟ ତପ୍ତ ମରୁ ସଦୃଶ । ଏଠି ଯାହା ସତ ନାହିଁ । ମଣିଷର ସତ୍ତା ଏଠି ଅନନ୍ତ । ତେଣୁ ଏଥିରୁ କବିଚିତ୍ତର ଯଥାର୍ଥ ପରିତୃପ୍ତି ମିଳିଥାଏ ଜୀବନର ସଂଗ୍ରାମରେ । ତାଙ୍କ କାବ୍ୟପୁଷ୍ପ ଆଧ୍ୟାତ୍ମିକ ହୋଇ-ଯାଇନାହିଁ । ବରଂ କାବ୍ୟପୁଷ୍ପ କହୁଛି—"ବିଶ୍ୱର ହିତେ ସନ୍ନ୍ୟାସୀ, ଅଗ୍ନି ପଥ ତୋ ସଖା ।" କବି ଭୀମଭୋଇ ଯେପରି କହନ୍ତି "ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ପାଉ" ସେହିପରି କବି ଚନ୍ଦ୍ରକାନ୍ତ ଦାରିଦ୍ର୍ୟ ଓ ଅଭାବ ଅନଟନ ମଧ୍ୟରେ ମଧ୍ୟ ବିଶ୍ୱମୁକ୍ତିର ସ୍ୱପ୍ନ ଦେଖିଛନ୍ତି । ଏହି ସ୍ୱପ୍ନ ରୋମାଣ୍ଟିକ ଚିତ୍ତବୃତ୍ତିର ପରିଚାୟକ ହେଲେହେଁ ଏଥିରେ ଅଛି ଗଭୀର ମାନବିକ ମମତ୍ୱବୋଧ । ସେ ଶତକଣ୍ଠରେ ଗାନ କରିଛନ୍ତି ମୈତ୍ରୀ-ପ୍ରୀତି ଓ ଅହିଂସାର ବନ୍ଦନା । ସେ

ନିଜେ ବ୍ୟକ୍ତିଗତ ଜୀବନରେ ଥିଲେ ଅଜାତଶତ୍ରୁ । ସେ ସମସ୍ତଙ୍କୁ ମିତ୍ର ଭାବରେ ଦେଖୁଥିଲେ । ସମସ୍ତଙ୍କୁ ଭଲ ପାଉଥିଲେ । ତେଣୁ ସେ କହନ୍ତି—"ମିତ୍ରଭାବେ ଯେ ବିଶ୍ୱେ ଦେଖଇ ଶତ୍ରୁ କେ ଦେବ ଧକା ।" କବି ଜମ୍ବୁକୃଷ୍ଣ ସମଗ୍ର ବିଶ୍ୱକୁ ମନେ କରନ୍ତି ଆପଣାର । ସବୁ ମଣିଷର ଅନ୍ତର ସହିତ ନିଜର ଅନ୍ତରକୁ ମିଶାଇଦେଇ ସେ ଗାନ କରନ୍ତି ମାନବିକତାର ସଙ୍ଗୀତ । ପ୍ରକୃତି ଓ ମଣିଷକୁ ଏକାତ୍ମ କରାଇ ଦେଇ ସେ ଗାଇଛନ୍ତି ଶାଶ୍ୱତ ଗୀତି । ତେଣୁ ଅଧ୍ୟାପକ ଜମ୍ବୁକୃଷ୍ଣ ମିଶ୍ରଙ୍କର ମର ଦେହ ହୁଏତ ଲୋପ ପାଇଗଲା । ମାତ୍ର ତାଙ୍କର କାବ୍ୟପୁରୁଷ ଅମର ହୋଇ ରହିଲା । ଶେଷ ଜୀବନରେ ସେ ମଧ୍ୟ ଜଗନ୍ନାଥ ଜଣାଣ ଲେଖି ହୃଦୟର ବିଭୁ ପ୍ରେମକୁ ପ୍ରକାଶ କରିଅଛନ୍ତି । ସେ ଓଡ଼ିଆ ସାହିତ୍ୟରେ ଜଣେ ବାଗ୍ମୀ—ପଣ୍ଡିତ ଓ ପ୍ରାଚୀନ ସାହିତ୍ୟର ସମାଲୋଚକ ଭାବରେ ପ୍ରତିଷ୍ଠା ଅର୍ଜନ କରିଥିଲେହେଁ ଜଣେ କବି ଭାବରେ ସେ ଯେଉଁ କେତୋଟି କାବ୍ୟକବିତା ଲେଖିଯାଇଛନ୍ତି ସେଗୁଡ଼ିକ ଗୌଣ ନୁହେଁ । ପ୍ରକୃତି ଓ ମାନବିକତାର ମୁଗ୍ଧ ବନ୍ଦନା ଭିତରେ ସେ ଯେପରି ସତ୍ୟ—ଶିବ—ସୁନ୍ଦର—ଶାନ୍ତ—ମୈତ୍ରୀ—ପ୍ରୀତି ଓ ଅହିଂସାର ବାଣୀ ଶୁଣାଇ ଏକ ନିର୍ଦ୍ଦିଷ୍ଟ କାବ୍ୟାବେଗ ସୃଷ୍ଟି କରିଅଛନ୍ତି ତାହା ବାସ୍ତବିକ ଅଭିନନ୍ଦନୀୟ ।



## ଶେଷଗୀତ



ଅଧ୍ୟାପକ ଜୟକୃଷ୍ଣ ମିଶ୍ର ରେଭେନ୍ସା ମହାବିଦ୍ୟାଳୟର ଓଡ଼ିଆ ବିଭାଗର ଶିକ୍ଷାଦାନ ସହିତ ଦୀର୍ଘକାଳ ସମ୍ପୃକ୍ତ ଥିଲେ । ତାଙ୍କର ବିୟୋଗରେ ଆମେ ସମସ୍ତେ ମର୍ମାହତ । ତାଙ୍କର ଅମର ଆତ୍ମା ଉଦ୍ଦେଶ୍ୟରେ ଓଡ଼ିଆ ବିଭାଗ ତରଫରୁ ଏହି ଆମର ବିନମ୍ର ଶ୍ରଦ୍ଧାଞ୍ଜଳି । ଏଥିପାଇଁ ଯେଉଁମାନେ ଆମ ସହିତ ସହଯୋଗ କରିଛନ୍ତି, ସେମାନଙ୍କୁ ଆମେ ଏ ଅବସରରେ କୃତଜ୍ଞତା ଜଣାଉଛୁଁ । ବିଶେଷକରି କୁଳମଣି ମହାରଣା ଆମଙ୍କୁ ଅଧ୍ୟାପକ ମିଶ୍ରଙ୍କ ପ୍ରତିକୃତିର ବ୍ଲକଟି ଦେଇଥିବାରୁ ଆମେ ତାଙ୍କୁ ଧନ୍ୟବାଦ ଜଣାଉଛୁଁ ।

ଜାନକୀବଲ୍ଲଭ ମହାନ୍ତି

